# ଅଭିନୟ

( ସାମାଜିକ ନାଟକ )

ପ୍ରଣେତା—

ଶ୍ରୀ ଅଶ୍ୱିନୀକୁମାର ଘୋଷ ଏମ୍. ଏ.

( ନାଟ୍ୟ ସମ୍ରାଟ, ନାଟ୍ୟ ଭାରତୀ, ନାଟ୍ୟ ରତ୍ନାକର )

ମୂଲ୍ୟ—ଏକଟଙ୍କା ଆଠଅଣା ମାତ୍ର

# ପଦେ ଅଧେ

ମନର ତିନୋଟି ସ୍ତର – ଅଚେତନ, ଅବଚେତନ, ସଚେତନ । ଅଚେତନ ମନରେ ଯାହା ଘଟିଥାଏ, ତା'ର ଅସ୍ତିତ୍ୱ ସଚେତନ ମନରେ ଅନୁଭୂତ ନ ହେଲେ ମଧ୍ୟ, ଅବଚେତନ ମନରେ ଅବଲୁପ୍ତ ରହିଥାଏ । ପରିସ୍ଥିତି ବା ପରିବେଶର ସଂଘାତରେ, ଉକ୍ତ ଘଟଣା ସଂକ୍ରାନ୍ତ ସଚେତନ ଓ ଅବଚେତନ ମନ ମଧ୍ୟରେ ଉପସ୍ଥିତ ହୁଏ ଘୋଟାଏ ସଂଘର୍ଷ । ତା'ର ଫଳରେ ଯେଉଁ ଆଲୋଡ଼ନ ଜାତ ହୁଏ, ତାହା ଜୀବନକୁ କରେ ହୁଏତ ଉପିସ୍ତୁଳନ, ଧ୍ୱଂସ କିମ୍ବା ନୂତନ ଅଲୋକର ସନ୍ଧାନ ଦିଏ । ଏହି ନାଟକରେ ସେହିପରି ଗୋଟିଏ ତତ୍ତ୍ୱର ଆଭାସ ଦେବାକୁ ଚେଷ୍ଟା କରା ହୋଇଛି ମାତ୍ର । ଅଧୁର, ବିବାହ ସମସ୍ୟା ଘେନି, ଏଥିରେ ଯାହା ପ୍ରତିପାଦିତ କରିବାକୁ ପ୍ରୟାସ କରା ଯାଇଛି, ତାହା କେତେ ଦୂର ସମୀଚୀନ ହୋଇଛି ଓ ସମାଜର କଲ୍ୟାଣ ସାଧନ ଯୋଗ୍ୟ କି ନା, ଏହା ପାଠକ, ତଥା ଦର୍ଶକ ସୁଧି-ବୃନ୍ଦ ବିଚାର କରି ଦେଖିବେ ।

ଏହି ନାଟକଟି ଲେଖା ହୋଇ ଦୀର୍ଘ କାଳ ଧରି ପଡ଼ି ରହି-
ଥିଲା; ହୁଏ ତ ନଷ୍ଟ ହୋଇଯାଇ ଥା'ନ୍ତା, ମାତ୍ର ନାଟ୍ୟକଳା ରସିକ ଓ ସୁନିପୁଣ ଅଭିନେତା—ମୋ'ର ପ୍ରିୟଶିଷ୍ୟ ଶ୍ରୀ ବିମଳ ଚନ୍ଦ୍ର ଘୋଷ ଦୈବକ୍ରମେ ପାଣ୍ଡୁଲିପିଟି ପଢ଼ି, ଏତେଦୂର ମୁଗ୍ଧ ହୋଇ ଯାଇଥିଲେ ଯେ, ସେ ତାହା ପାଦ-ପ୍ରଦୀପ ସମ୍ମୁଖରେ ସ୍ଥାପନ କରି-ବାକୁ ଦୃଢ଼ ସଂକଳ୍ପ ହୋଇଥିଲେ; ଏବଂ ଶ୍ରୀ ବ୍ରଜବିହାରୀ ମିଶ୍ର, ଆଇ. ପି. ଙ୍କର ଅଦମ୍ୟ ଉତ୍ସାହ ଏବଂ 'The Head quarters Police Recreation Club'ର ବନ୍ଧୁମାନଙ୍କର ଆନ୍ତରିକ ସହଯୋଗ ଓ ଅକ୍ଳାନ୍ତ ପରିଶ୍ରମକୁ ସମ୍ବଳ କରି ଲକ୍ଷ୍ୟ ସାଧନ କରିଥିଲେ ଆଶାତୀତ କୃତକାର୍ଯ୍ୟ ସହିତ। ଏଥିପାଇଁ ମୁଁ ବିମଳବାବୁଙ୍କୁ, ତଥା କ୍ଲବର କର୍ତ୍ତୃପକ୍ଷ ଓ ସଦସ୍ୟ ବୃନ୍ଦଙ୍କୁ ମୋ'ର ଅନ୍ତରର ଗଭୀରତମ ପ୍ରଦେଶରୁ ଅଭିନନ୍ଦନ ଓ କୃତଜ୍ଞତା ଜଣାଉଛି । ପରିଶେଷରେ ମହାମାନ୍ୟ ରାଜ୍ୟପାଳ ଶ୍ରୀ ଫଜଲ୍ ଅଲ୍ ଅଭିନୟ ଦେଖି, ଭୂରି ଭୂରି ପ୍ରଶଂସା ଓ ଉତ୍ସାହିତ କରିଥିବାରୁ, ମୋ'ର ଯଥା ସମ୍ମାନ ତାଙ୍କୁ ଜଣାଉଛି । ଇତି ।

ଅଶ୍ୱିନୀ

[ ପ୍ରଥମ ଉଦ୍ଘାଟନ ରଜନୀ ]

ହେଡ଼୍‌କ୍ୱାର୍ଟର୍ସ ପୋଲିସ ରିକ୍ରିଏସନ କ୍ଲବ
କର୍ତ୍ତୃକ ଅଭିନୀତ

# "ଅଭିନୟ"

ଲେଖକ:—ନାଟ୍ୟସମ୍ରାଟ ଅଶ୍ୱିନୀକୁମାର ଘୋଷ, ଏମ୍ ଏ

ସମୟ:—ଏପ୍ରିଲ ତା ୨୦ ଓ ୨୧ ଋଖ ୧୯୫୩

ସ୍ଥାନ—ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ

| ମୁଖ୍ୟ ପୋଷକ— | ସଭାପତି— |
|---|---|
| ଶ୍ରୀ ବ: ରାୟ, ଅଇ, ପି | ଶ୍ରୀ ବ. ବ. ମିଶ୍ର ଅଇ, ପି |

| | |
|---|---|
| ନିର୍ଦ୍ଦେଶକ— | ବିମଲ୍ ଘୋଷ |
| ଗୀତ ରଚନା ଓ ସଂଯୋଜନା— | କିଶୋର କବି ଶ୍ୟାମସୁନ୍ଦର |
| ନୃତ୍ୟ ନିର୍ଦ୍ଦେଶକ— | କାହ୍ନୁଚରଣ ଏମ, ଏ ଓ କେଳୁ ଚରଣ |
| ଆଲୋକ ସମ୍ପାତ ଓ ଶବ୍ଦ ଧାରକ— | ଉପେନ୍ଦ୍ର |
| ଦୃଶ୍ୟ ପଟ— | ଅନ୍ନପୂର୍ଣ୍ଣା |
| ରଙ୍ଗମଞ୍ଚ ତତ୍ତ୍ୱାବଧାରକ— | କାର୍ତ୍ତିକ ଓ ଗୋପାଳ |
| ରୂପ-ସଜ୍ଜା— | ସରକାର ଭ୍ରାତୃ ବୃନ୍ଦ |
| ମଞ୍ଚଶୃଙ୍ଖଳା— | ଜୟନ୍ତ, ବିନୋଦ, ଲକ୍ଷ୍ମୀ ନାରାୟଣ, ରାମକୃଷ୍ଣ |
| ସ୍ମାରକ— | ରାମଚନ୍ଦ୍ର, ରାମକାନ୍ତ |

---

# ରୂପାୟନରେ

## —ପୁ ରୁ ଷ—

| | |
|---|---|
| ରାମଦୁଲାଲ୍—ଜମିଦାର | ଗୋକୁଳ କର |
| ମିଃ ଦାସ—ବାରିଷ୍ଟର | ଶ୍ରୀକାନ୍ତ ମହାନ୍ତି |
| ଚଣ୍ଡପତି—ଏଙ୍କ ବନ୍ଧୁ | ବିମଳ ଘୋଷ |
| ବେଣୁବ୍ରତ—ଏଙ୍କ ମୋହରର | ବସନ୍ତ ଦତ୍ତ |
| ଖାଁ ସାହେବ—କାବୁଲିବାଲା | ନନ୍ଦ ବେନାର୍ଜି |
| ମ୍ୟାନେଜର—ଥିଏଟର | ଗୋପିନାଥ ଦାସ |
| ଶେଠଜୀ—ବ୍ୟବସାୟୀ | ଜୀବନ ରାୟ |
| ବଡ଼ବାବୁ—ଅଫିସ କିରାଣି | ନାରାୟଣ ଅଗ୍ରଣ୍ଡ |
| ଦରୱାନ | ପ୍ରହ୍ଲାଦ ସିଂ |

ଦର୍ଶକବୃନ୍ଦଃ—ବସନ୍ତ ମହାନ୍ତି, ନୟନ ଦାସ, ଅମର ଘୋଷ

## ସ୍ତ୍ରୀ

| | |
|---|---|
| ମନୀଷା—ଜମିଦାର ନାତୁଣୀ | କୁମାରୀ ଉମାମା ପେଡନ |
| ଗୀତା—ଏଙ୍କ ବାନ୍ଧବୀ | ,, ରାଧାରାଣୀ ଘୋଷ |
| ଛନ୍ଦା—ଏଙ୍କ ବାନ୍ଧବୀ | ,, ଗ୍ଲୋରିଆ ରଜତ |
| ଯୂଥିକା—ଭିଖାରୁଣୀ | ,, ଇନ୍ଦ୍ରା ରାୟ |

---

## ସୂଚନା

[ ରଙ୍ଗମଞ୍ଚ—ଯବନିକା ଉଠି ନ ଥିଲା । ଅଭିନୟ ଆରମ୍ଭ ହେବାର ପୂର୍ବ ମୁହୂର୍ତ୍ତରେ ଜଣେ କର୍ମଚାରୀ ଗୋଟିଏ ପ୍ରାଚୀର ପତ୍ର ଆଣି ଯବନିକା ଆଗରେ ଥୋଇ ଦେଲା—"ଆଜି ଅଭିନୟ ବନ୍ଦ" ।—ହଠାତ୍ ଦର୍ଶକଙ୍କ ମଧ୍ୟରେ ଚାଞ୍ଚଲ୍ୟ ଖେଳିଗଲା । ଜଣେ ସିଧା ମଞ୍ଚ ଉପରକୁ ଉଠି ଯାଇ—]

ପ୍ରଥମ ଦର୍ଶକ—ଅଭିନୟ ବନ୍ଦ ? କ'ଣ ଥଟ୍ଟା ଲାଗିଛି, ନା କ'ଣ ? ଧପ୍ପାବାଜି କରିବାକୁ ଜାଗା ମିଳିଲା ନାହିଁ ? ମ୍ୟାନେଜର ବାବୁ, ହେ ମ୍ୟାନେଜର ବାବୁ ।

୨ୟ ଦର୍ଶକ—ଭିତରକୁ ଯାଇ ଟାଣି ଆଣ ନା !

୩ୟ ଦର୍ଶକ—ହଁ, ଦେଖାଯାଉ, କ'ଣ କୈଫିୟତ ଦେଉଛନ୍ତି ।

୧ମ ଦର୍ଶକ—ହେ ମ୍ୟାନେଜର ବାବୁ, ମ୍ୟାନେଜର ବାବୁ—

୨ୟ ଦର୍ଶକ—ସ୍କ୍ରିନ୍ ପଛରେ ଲୁଚି ଯାଇ ପାର ହୋଇ ଯିବେ, ସେ କଥା ହବ ନାହିଁ—ହେ ମ୍ୟାନେଜର ବାବୁ ।

୩ୟ ଦର୍ଶକ—ଆମେ ଟିକଟ କରି ଆସିଛୁ—ମାଗଣା ନୁହେଁ । ଆସିବେ ଆସନ୍ତୁ, ନଚେତ୍ ଚେୟାର ଖଣ୍ଡେ ଖଣ୍ଡେ ନେଇ ଚାଲିଲୁ ।

ମ୍ୟାନେଜର—( ପ୍ରବେଶ କରି ) ଆପଣମାନେ ଶାନ୍ତ ହୁଅନ୍ତୁ ।
୧ମ ଦର୍ଶକ—ବେଶ୍ ! କୈଫିୟତ୍ ଦିଅନ୍ତୁ ।
ସମସ୍ତେ—କାହିଁ ଅଭିନୟ ଆମେ ଦେଖିବୁ ।
ମ୍ୟାନେଜର—ଆପଣମାନେ ସ୍ଥିର ହୋଇ ବସନ୍ତୁ । ମୋ କଥା
ଟିକେ ଶୁଣନ୍ତୁ ।
୩ୟ ଦର୍ଶକ—ବେଶ, ବେଶ, ଆପଣ ଚାଲନ୍ତୁ ଚୁଲି ଆସନ୍ତୁ ତ—
ମ୍ୟାନେଜର ବାବୁ କ'ଣ କହୁଛନ୍ତି ଦେଖା ଯାଉ ।
୧ମ ଦର୍ଶକ—ବେଶ୍ ସେୟା ହେଉ ! ( ଆସି ନିଜ ଆସନରେ
ବସିଲେ )
ମ୍ୟାନେଜର—ଆଜ ଗୋଟିଏ ଆକସ୍ମିକ ଘଟଣା ଘଟି ଯାଇଛି ।
୨ୟ ଦର୍ଶକ—ଏଥି ପାଇଁ ଅଭିନୟ ବନ୍ଦ ହେବ ?—ଏ'କଥା ବୁକିଂ
ପୂର୍ବରୁ କମ୍ପା ପ୍ରଚାର ଦ୍ୱାରା ଜଣାଇ ଦେବା ଉଚିତ ଥିଲା ।
ମ୍ୟାନେଜର—କ୍ଷତି ମାର୍ଜନା କରିବେ ।
୨ୟ ଦର୍ଶକ—ମାର୍ଜନା !
୧ମ ଦର୍ଶକ—ଆଃ ! ତୁମ ହୁଅନ୍ତୁ ନା । ଆଚ୍ଛା ମାର୍ଜନା କଲୁ,
କଥାଟା କଣ କୁହନ୍ତୁ ଶୁଣୁ ?
ମ୍ୟାନେଜର—ଦୁଃଖର ବିଷୟ, ଆଜର "ଅଭିନୟ" ନାଟକର
ଭୂମିକାରେ ଯେଉଁ ମହାଶୟଙ୍କର ଅଭିନୟ କରିବାର କଥା,
ସେ ହଠାତ୍ ଅସୁସ୍ଥ ହୋଇ ପଡ଼ିଛନ୍ତି । ସେଥିପାଇଁ
ଅଭିନୟ ବନ୍ଦ କରିବାକୁ ବାଧ୍ୟ ହୋଇଛୁଁ । ଯଦି ଆପଣ-
ମାନେ ଅଭିନୟ ନିତାନ୍ତ ଦେଖିବାକୁ ବାଧ୍ୟ କରନ୍ତି—
୧ମ ଦର୍ଶକ—ତେବେ ଅନ୍ୟ ଜଣକୁ ସେହି ଭୂମିକାରେ ଛିଡ଼ା
କରିବେ ।

ମ୍ୟାନେଜର—ହଁ—ଆପଣମାନେ ଏ ବିଷୟରେ ଏକମତ ହେଲେ...

୩ୟ ଦର୍ଶକ—ବେଶ୍, ସେଇଆ ହେଉ—

୨ୟ ଦର୍ଶକ—ଆମର ତ ଅଭିନୟ ଦେଖିବାର କଥା—'ନାହିଁ ମାମୁଁ ଠାରୁ କଣା ମାମୁଁ ଭଲ' ।

୧ମ ଦର୍ଶକ—ବେଶ୍ ଆପଣମାନେ ଦେଖନ୍ତୁ । ମୁଁ ଗଲି—ମୁଁ ଏ ନାଟକ ଦେଖିବାକୁ ଆସି ନ ଥିଲି । ମୁଁ ଆସିଥିଲି—ଯେ ନୂଆ ହୋଇ ଅଭିନୟ କରିବେ—ସେହି ଅଭିନେତାଙ୍କ ଆକର୍ଷଣରେ ।

ସମସ୍ତେ—ହଁ—ହଁ—ଆମେ ସେୟା ଚାହୁଁ—ଆମେ ଚାହୁଁ ସେହି ନୂଆ ଅଭିନେତାଙ୍କର ଅଭିନୟ ।

( ପୁଣି ଗୋଳମାଳ ଆରମ୍ଭ ହେଲା )

ଅଭିନେତା—(ପ୍ରବେଶକରି) ମ୍ୟାନେଜର ବାବୁ । ଆପଣ ଟିକେ ଭିତରକୁ ଯାଆନ୍ତୁ ।

୨ୟ ଦର୍ଶକ—ଏ ପୁଣି କିଏ ?

ଅଭିନେତା—ମୁଁ ସେହି ହତଭାଗ୍ୟ ଅଭିନେତା—ଯାହାକୁ ଦେଖିବା ପାଇଁ ଆପଣମାନେ ବ୍ୟାକୁଳ ।

୧ମ ଦର୍ଶକ—ହଁ, ଏ ବେଶରେ ଦେଖିଲେତ ଆମର ପେଟ ପୂରିବ ନାହିଁ ।

୨ୟ ଦର୍ଶକ—ଯାଆନ୍ତୁ—ପୋଷାକ ପିନ୍ଧନ୍ତୁ—ଅଭିନୟ କରନ୍ତୁ—ତା'ପରେ ସିନା ଆମେ ଦେଖିବୁ ।

୩ୟ ଦର୍ଶକ—ହଁ—ହଁ—ଆମେ ଚାହୁଁ ଅଭିନୟ—ଏହି ହାଣ୍ଡବିଲ, ଯାହା ଅନେକ ମାସେ ହେଲା ସହରରେ ବଣ୍ଟା ହୋଇଛି ।

୨ୟ ଦର୍ଶକ—କ'ଣ ଲେଖା ହୋଇଛି ଥରେ ପଢ଼ି ଶୁଣାନ୍ତୁ ନା—

୩ୟ ଦର୍ଶକ—( ଢ଼ଗୃର ପଣଟି ପଢ଼ିଲେ ) ଏପରି ଅଭିନୟ ଜୀବନରେ କେହୁ କଦାପି ଦେଖି ନ ଥିବ—'ଅଭିନୟ ସଜାଣେ ଅଭିନୟ' ଏ ଯେଉଁ ଗୀତ ଚଳି ଅସୁଛି—ଏ ଅଭିନୟ ତା' ନୁହେଁ—ଆମର ବାସ୍ତବ ଜୀବନରେ ନିତ ଯାହା ଘଟୁଛି ବା ଘଟି ଯାଉଛି—ଏଥିରେ ତାହା ଜୀବନ୍ତ ଦେଖିବେ ।

୨ୟ ଦର୍ଶକ—କ'ଣ କହୁଛନ୍ତି ଏଥର ?

ଅଭିନେତା—ପ୍ରକୃତରେ ଯଦି ଆପଣମାନେ ଏପରି ଜୀବନ୍ତ ଅଭିନୟ ଦେଖିବାକୁ ଆଶା କରିଥାନ୍ତି, ତେବେ ଜୀବନ-ନାଟକର କୌଣସି ଏକ ଘଡ଼ି ସନ୍ଧି ବେଳେ—ଅଭିନୟ ଯେତେବେଳେ ବାଧ ହୋଇ ଯାଏ—ସେତେବେଳର ସେହି ବିଚିତ୍ର କାହାଣୀଟି ମତେ କହିବାକୁ ଦେବେ କି ?

ସମସ୍ତେ—ବେଶ୍ ବେଶ୍—କୁହନ୍ତୁ ।

ଅଭିନେତା—( ଦୀର୍ଘଶ୍ୱାସ ଛାଡ଼ି ) ମୋର ଜୀବନ-ନାଟକର ବିଶେଷ ଅଙ୍କ ପଡ଼ିଲା ସେହି ଦିନ—ଯେଉଁ ଦିନ ଏହି ସହରର ଗୋଟିଏ ପକ୍କାଘରର ବୈଠକ ଖାନାରେ—ଏ' କିଏ ?—ଏ' କିଏ ?—କିଏ ! କିଏ ତୁମେ—ଅତୀତର ଅଭୁଲ କାହାଣୀ ଘେନି ବସିଛ ସେଠାରେ ?—ଦେଖା ଦିଅ—ମୂକ ଅତୀତକୁ ଭାଷା ଦିଅ—କଥା କୁହ—କଥା କୁହ—( ଯବନିକା ଉତ୍ତୋଳିତ ହେଲା )



## ପ୍ରଥମ ଦୃଶ୍ୟ

[ ବୈଠକ ଖାନା -- ମନୀଷା ବାର୍ଣ୍ଣାଡ଼ ଶଙ୍କର ଖଣ୍ଡେ ନାଟକ ପଢ଼ୁ ପଢ଼ୁ ହଠାତ୍ ଚିତ୍କାର କରି ଉଠିଲେ ]

ମନୀଷା— ବାର୍ଣ୍ଣାଡ୍ ଶ ଠିକ୍ କହୁଛନ୍ତି—"ମ୍ୟାରେଜ ଇଜ୍ ଏ ଲିଗେ-ଲାଇଜ୍‌ଡ଼ ପ୍ରଷ୍ଟିଚ୍ୟୁସନ୍ ( Marriage is a legalised prostitution ) ଅର୍ଥାତ, ବିବାହ ହେଉଛି ଗୋଟାଏ ଆଇନ ସଙ୍ଗତ ବ୍ୟଭିଚାର ।

[ ଗୀତା ହସ୍ତେ ଗୀତା ଦେବୀ ପ୍ରବେଶ କଲେ ]

ଗୀତା—ଚୁପ୍, ଛୋଟେ ଅଜ ସେ ଅବୃତ୍ତି କରିବାକୁ ହେବ ନି । କବି ହୁଏତ କୌଣସି ଏକ ନାରୀର ଜାତ ଭାବକୁ ସେପରି ନିକୃଷ୍ଟ ଭାଷାରେ ବ୍ୟକ୍ତ କରି କଟାକ୍ଷ କରିଥିବେ—ସ୍ୱୀ ବୋଲି ତୁ ଯେ, ତାକୁ ଗୋଟାଏ ପ୍ରବଚନ କରି ଥୋଇବୁ, ସମସ୍ତ ନାରୀ ଜାତିକୁ ଉପଲକ୍ଷ୍ୟ କରି, ଯା ମୁଁ କେବେ କରିବ ଦେବ ନାହିଁ ।

ମନୀଷା—ଗୀତାଧାରିଣୀ ସାକ୍ଷାତ୍ ଗୀତା ଦେବୀ ଯେ ତା' ଭିତର ଉଦ୍ଭସ୍ତ ଗୀତା ନାମରେ କଳଙ୍କ ଲେପିବାକୁ ଦେବେ ନାହିଁ, ତା' ମୋତେ ଜଣା । ଛାଡ଼, ଆଜି ଏତେ ଚଞ୍ଚଳ ? ଆଜିଙ୍କର ଗୀତା ଶୁଣିବା ବେଳ ତ ହେଇ ନୁହେଁ ?

ଗୀତା—ତୁ ଟେବୁଲ-କାଳ-ଘଣ୍ଟା ଏକାବେଳକେ ହଜେଇ ଦେଇଛୁ ତ ?

ମନୀଷା—( ଟେବୁଲ ଉପରେ ଟ୍ଟ-ପିଅଲ ଦେଖି ) ଏଁ, ଟ୍ଟ ବେଳ ଗଡ଼ି ଗଲାଣି ?

ଗୀତା—ହଁ, ଟ୍ଟ ଏକାବେଳକେ ଥଣ୍ଡା । ଆଚ୍ଛା ମନୀଷା, ଆଜି ତୋର କଅଣ ହୋଇଛି କହ ତ ?

ମନୀଷା ନା, କିଛି ନାହିଁ ।

ଗୀତା—ମୁହଁରେ ସିନା 'ନା' କହୁଚୁ···ହେଲେ···

ମନୀଷା—ହେଲେ ?

ଗୀତା—ତୋର ଆଖି, ଓଠ କହୁ ଦେଉଛି, ଅଫୁଟା ଭାଷାରେ— ଗୋଟାଏ ଲୁକ୍କାୟିତ ପ୍ରେମର କାହାଣୀ

ମନୀଷା—ହୁଁ ହୁଁ — ବାସ୍ତବର ଇତିହାସ ( ହସିବାକୁ ଲାଗିଲେ )

ଗୀତା—ମନୀଷା !

ମନୀଷା—ଆଚ୍ଛା ଗୀତା ! ମୁଁ ମଣିଷ— କାହାଣୀର କଳ୍ପନା ବା ସ୍ୱପ୍ନ ନୁହେଁ; ସୁତରାଂ ଇତିହାସର ବାସ୍ତବ ସତ୍ୟକୁ ଅଲଙ୍ଘନ କରିବ କାହିଁକି ?

ଗୀତା—ତେବେ, ଆମେ ଯେତିକି ଦେଖୁଥାଉଁ ବା ବୁଝୁଥାଉଁ ସେତିକି ଯେ ସତ, ଏ କଥା ଭାବିବା ଠିକ୍ ନୁହେଁ ।

ମନୀଷା—ଯା ବୋଲି ଛୁଟି ମାତି ଅଦର୍ଶ କଳ୍ପନା ଜାଲରେ ଛନ୍ଦ ହୋଇ ମରିବା, ଯା ମଧ୍ୟ ଠିକ୍ ନୁହେଁ ।

ଗୀତା—ତେବେ କଅଣ ତୁ କହିବାକୁ ଚାହୁଁ, ବନ୍ଧନର କୌଣସି ମୂଲ୍ୟ ନାହିଁ ?

ମନୀଷା—ନା ନାହିଁ । ମୁଁ ମୁକ୍ତ—ମୁକ୍ତ ବିହଙ୍ଗ ପରି ମୁକ୍ତାକାଶରେ ଉଡ଼ି ବୁଲିବି, ଏ ଅଧିକାର ମୋର ଅଛି ।

ଗୀତା—ହେଲେ, ନିଜର ଶକ୍ତି ନ ବୁଝି ଉଡ଼ିବାକୁ ଯାଇ "ପଧାତ-ଧରଣୀତଳେ" ହେବାଟା କିଛି ବିଚିତ୍ର ନୁହେଁ । ହାଃ ! ହାଃ ! ହାଃ ! ( ହସିବାକୁ ଲାଗିଲେ )

ମନୀଷା—ହେଲେ ବି, ସେଥିରେ ଅଛି ସ୍ୱାଧୀନତାର ଗୋଟାଏ ସ୍ୱସ୍ତି ।

[ ଗୀତ ]

ଦୂରେ—ଦୂରେ ଦୂରେ ବିଜନ ନୀରେ
ମୁକୁଳା ମନ ମୋର ପହଁରେ ( ଧୀରେ ଧୀରେ )
ସୁରେ ସୁରେ ସମୀର ସାଥେ ସାଥେ ଲହରେ—ଲହରେ ॥
( କେବେ ) ବିହଗୀ ସମ ବୁଲେ କାନନ ଶିରେ ଶିରେ
ଫଗୁଣ ପୁଲକେ ପ୍ରୀତି କଅଁଳେ, କଅଁଳେ ।

ଗୀତା—ତୋର ଅଙ୍ଗ ହୋଇଛି କଅଣ କହ ତ ? ମିଃ ଦାସ ତୋତେ ଖଣ୍ଡେ ଚିଠି ଦେଇଥିଲେ ଦେଖିଥିଲି କଲେଜରେ । ସେଥିରେ ଏମିତି କଅଣ ଲେଖା ଥିଲା ଯେ—ଅଛି, ସେ ଚିଠିଟା କାହିଁ ?—ଦେଖେଁ ।

[ ମନୀଷା ଫିକା ପଡ଼ିଗଲେ—ଗୀତା ତାଙ୍କ ପାଖକୁ ଯାଇ ]

ଏପରି ଫିକା ପଡ଼ି ଗଲୁ ଯେ ।

ମନୀଷା—କାହିଁ ? ( ହସିବାକୁ ଚେଷ୍ଟା କଲେ )

ଗୀତା—ଦେଖ୍, ଲୁଚା ନା ।

[ କଅଣ କହୁବେ ଠିକ୍ କରି ପାରୁ ନ ଥିଲେ—ଏହି ସମୟରେ ଟେଲିଫୋନ୍ ଘଣ୍ଟି ବାଜି ଉଠିଲା—ମନୀଷା ଟେଲିଫୋନ ରିସିଭର ଧରି ]

ମନୀଷା—ହ୍ୟାଲୋ'—କିଏ ? ଛନ୍ଦା ?—ହିଁ ହିଁ, ମୁଁ ମନୀଷା—କେବେ ଫେରିଲୁ ?—ଅଜି ?—ଶୁଣ୍ ନାଚଗୀତ ହେଲା, ନା ? ଫାଷ୍ଟ କନଗ୍ରାଚୁଲେସନ୍—ଅଭିନନ୍ଦନ ! ଅସିବୁ !—ନା, ବର୍ତ୍ତମାନ ମୋର ଜଣେ ସେ-କାଳିଆ ବନ୍ଧୁ ସଙ୍ଗେ ପରିଚୟ କରାଇ ଦେବି...ଜି ହୁଁ—ବୁଢ଼ୀ ଦୂଆ ନୁହେଁ—ଅମର ବୟସୀ—ହିଁ, ହେଲେ ସେ-କାଳିଆ ( ହସିଲେ )—ନିଶ୍ଚୟ ଅଟକାଇ ରଖିବି !...( ହସିଲେ ) ଅଚ୍ଛା...

( ଫୋନ ରିସିଭର ଥୋଇ ଦେଲେ )

ଗୀତା—ଏ'-କାଳିଆ ବନ୍ଧୁଟି ତୋର କିଏ, ମନୀଷା ?

ମନୀଷା—ଏ ସହର-ବାସିନୀ—ଏଥର କଲିକତା-ଅଲ୍-ଇଣ୍ଡିଆ ମିଉଜିକ୍ କନଫରେନ୍ସରେ ଫେମିଅନିଷିପ୍-ପଦକ-ଧାରିଣୀ—ନୃତ୍ୟ-ବିହଙ୍ଗିନୀ ।

( ଗୀତ )

(କେବେ) ସାଗର ତୀରେ ତୀରେ ଲହରୀ ମେଳେ ଗଳେ
ଲହକି ଲହକି ଧୀରେ ବହରେ—
ମୁଁ ଜୋଛନା ତୁଲେ ନାଚିଥିଏ ଦୋହଲେ
(ଯେବେ) ସୁନୀଳ ସରଗ ଚୁଲ୍ଲୁ ଶିହରେ ॥

ଗୀତା—ତୋତେ ବି ସେଇ ସଙ୍ଗୀତର ନିଶା ଧରିଲା, ଦେଖୁଛି—ଅଚ୍ଛା, ମନୀଷା ! ଅଜି ମଜନୁ ଫଜନୁ କେହି ତୋ ନଜରରେ ପଡ଼ୁଛି ନା କ'ଣ ?

ମନୀଷା—[ ଚମକି ପଡ଼ିଲେ ]

ଗୀତା—ଏମିତି ଚମ୍‌କି ପଡ଼ିଲୁ ଯେ !—ଦେଖ ଭଉଣୀ, ଯେମିତି ଲମ୍ଫ ହୋଇ ଶେଷକୁ, ନିଜେ କାନ୍ଦି ଅଶ୍ରୁ ବହାଇ ନ ମରୁ ।

ମନୀଷା—ଗୀତା—ଗୀତା ପଢ଼ି ପଢ଼ି ତୁ ଏମିତି ରୁକ୍ଷ ହୋଇଯିବୁ, ଗଲଣି ଯେ, ରସ-କ୍ଷୁଧା ତୋ'ର ଆଦୌ ନାହିଁ ।

ଗୀତା—ରସ-କ୍ଷୁଧା ନ ଥିଲେ ଜୀବ-ତରୁ ବଞ୍ଚିବ କିପରି ?

ମନୀଷା—ତେବେ ନାଚ ଗୀତକୁ ତୁ ପସନ୍ଦ କରୁନା କାହିଁକି ?

ଗୀତା—ନାଚ ଗୀତ ଯେଉଁ ରସ ବାଢ଼ିଥାଏ, ସେଥିରେ ଅନ୍ତରର କ୍ଷୁଧା ମରେନାହିଁ, ମନୀଷା ।

ମନୀଷା—ଅଚ୍ଛା ! ଅଳ୍ପ ଛନ୍ଦା—ଦେଖେଇ ଦେବି, ନାଚ ଗୀତ ଭିତରେ ଅନ୍ତର ତୃପ୍ତାଇଲା ଭଳି ରସ ଅଛି କି ନା ।—ହେଲେ, ତୁ ନିଜେ କହ ତ,—ଇନ୍ଦ୍ରିୟକୁ ଶୁଖେଇ ରସର ସନ୍ଧାନ ଠାରୁ ଇନ୍ଦ୍ରିୟକୁ ବଢ଼େଇ ରସର ସନ୍ଧାନ ଉଚିତ କି ନା ?

ଗୀତା—ଉଚିତ ବୋଲିତ "ଗୀତା"ରେ ଲେଖାଅଛି ଯେ ଯୋଗ ସାଧନାର ଏତେ ଦରକାର ।—ଶିବଙ୍କୁ ପତି ରୂପେ ପାଇବେ, ସେଥିପାଇଁ ଶିବାଣୀ କି କଠୋର ତପସ୍ୟା କରିଥିଲେ, ଜାଣୁ ତ ?

ମନୀଷା—ତୋର ସେଇ ସବୁ ପୁରୁଣା କଥା—ଅଳ୍ପ ପୁରାଣର ଉପମା । ଅଚ୍ଛା ଅଳ୍ପ ଛନ୍ଦା—ଯାଃ ଭୁଲିଗଲି ତ, ଛନ୍ଦାକୁ ଗୋଟାଏ କଥା ଜଣାଇ ଦେବାକୁ—ସେ ଯେମିତି ଠେକ୍ସିରେ ଆସେ— —[ ଟେଲିଫୋନ୍ ପାଖକୁ ଦୌଡ଼ି ଯାଉଥିଲେ—ଏହି ସମୟରେ ମିଃ ଚଟ୍ଟପତି ପ୍ରବେଶ

ଇଲେ, ହାତରେ ଟୋଟାଏ ପ୍ଲାଟ୍, ଫାଇଲ୍—ନାନା କାଗଜ ପତ୍ରରେ ବୋଝେଇ ]

ଚଟ୍‌ପଟି—ବସ୍‌ତେ ଅନ୍ତତଃ ନୁହେଁ, ଏ କଥା ବିଶେଷ କରି ଜଣାଇ ଦେବେ—

ମନୀଷା - [ଭୂତ ଦେଖିଲା ପରି ଅଭିଭୂତ ହୋଇ ଗଲେ] ଏଁ !

ଚଟ୍‌ପଟି—ଭୟ କରିବେ ନା ।

ମନୀଷା—କିଏ ତୁମେ ?

ଚଟ୍‌ପଟି—ଜଣେ ଭଦ୍ର-ଲୋକ ନିଶ୍ଚୟ ।

ମନୀଷା—ଭଦ୍ର-ଲୋକ ଏପରି ଅଭଦ୍ର ଭାବରେ ପ୍ରବେଶ କରେ ନାହିଁ ।

ଚଟ୍‌ପଟି—ହେଲେ, ଅନଧିକାର ପ୍ରବେଶ—ଏ କଥା ବି କହି ପାରିବେ ନାହିଁ ।

ମନୀଷା—କେଉଁ ଅଧିକାରରେ ତୁମେ ଏ କଥା କହୁଚ ?

ଚଟ୍‌ପଟି—ବେଶ୍, ତେବେ ଶୁଣନ୍ତୁ ।

ମନୀଷା—ତୁମେ ଏ' ଠୁଁ ବାହାରି ଯାଅ—( ନିଜେ ବାହାରି ଯାଉଥିଲେ )

ଗୀତ—( ଟାଣି ବସାଇ ) ଅଃ । ଶୁଣା ଯାଉନା;—ବଡ଼ ଚଞ୍ଚଳ ।

ଚଟ୍‌ପଟି—ମୋର ନାମ ଚଟ୍‌ପଟି—କାମରେ ବି ମୁଁ ଚଟ୍‌ପଟ୍—ସଂକ୍ଷେପରେ ଶୁଣିଯାନ୍ତୁ ।—ଅଜି ଡାକବଙ୍ଗଳାରୁ ଅସୁଥିଲି, ଟାଉନ ବସ୍‌ରେ—ହଠାତ୍ ନଜର ପଡ଼ିଗଲା, ମୋର ବେଞ୍ଚ କଡ଼ରେ ଠିଆ ହୋଇଛନ୍ତି ଜଣେ କଲେଜ ଛାତ୍ରୀ—ମୁଁ ଭଦ୍ର ଭାବରେ କହିଲି—'ବସନ୍ତୁ—ବେଞ୍ଚରେ, ଯାଗା ଅନେକ ଖାଲି'—ତଥାପି ସେ ଠିଆ ହୋଇ

ବାହାରିଲେ,—ମୁଁ ଅସ୍ତର୍ଯ୍ୟ ହୋଇ ମୁହଁକୁ ଗୁହିଁଥାଏ । ଏହି ସମୟରେ ଗୋଟାଏ ଚହଲ ପଡ଼ିଗଲା, ବସ୍ ଭିତରେ । କେହି ଜଣେ ଯାତ୍ରୀଙ୍କ ଭିତରୁ ଥଟ୍ଟା କରି କହିଲେ, "ଦେଖି ପାରୁ ନାହାନ୍ତି, ମହାଶୟ ! 'ଲେଡିଜ୍, ଓନ୍‌ଲି' ଅର୍ଥାତ୍ କେବଳ ଭଦ୍ର-ମହିଳାଙ୍କ ପାଇଁ ଲେଖାଅଛି, ବଡ଼ ବଡ଼ ଅକ୍ଷରରେ ବେଞ୍ଚ ପଛରେ ?"

ଗୀତା—ତା' ପର—?

ଚିତ୍ତପତି—ମୁଁ ଏ ଥଟ୍ଟା ସହ୍ୟ କରି ପାରିଲି ନାହିଁ—ବେଶ ତୀବ୍ର କଣ୍ଠରେ ଜବାବ ଦେଲି—"ଜାଣେ ମହାଶୟ । ଜାଣେ—ହେଲେ କହିବେ କି, ଆଜି ଏ' ପ୍ରଗତି ଯୁଗରେ, ନାରୀ ଯେତେବେଳେ ସମାନ ଅଧିକାର ଦାବୀ କରୁଛନ୍ତି ପୁରୁଷଠାରୁ—ସମାଜର ସବୁ କ୍ଷେତ୍ରରେ—ଆଉ ପୁରୁଷ ସେ ଦାବୀ ମାନି ନେଉଛନ୍ତି, ସେତେବେଳେ କାର୍ଯ୍ୟ-କ୍ଷେତ୍ରରେ—ଯେପରିକି, ଏହି ଯାନ ବାହନରେ, ଏ' ଭଳି ଭେଦ-ଭାବ ଦେଖାଇବାର ଅର୍ଥ ?—

ଗୀତା—ଠିକ୍ କରିଛନ୍ତି···ତା' ପର ?

ଚିତ୍ତପତି—ତା'ପର ମହିଳାଟିକୁ ସମ୍ବୋଧନ କରି କହିଲି, "ହେ ମହୀୟସୀ ନାରୀ ! କେତେ ଦିନ ଆଉ ଆପଣମାନେ ପୁରୁଷର ଏହି ଧପ୍‌ପାବାଜି, ମୂକ-ପଶୁ ପରି ବରଦାସ୍ତ କରୁଥିବେ ?—ଥରେ ଚିନ୍ତା କରି ଦେଖନ୍ତୁ—କେବଳ ଭଦ୍ର ମହିଳାଙ୍କ ପାଇଁ ଏହିପରି ମାର୍କା ମାରି ମନୁଷ୍ୟ ସମାଜରୁ ଘୃଣ୍ୟ ବସନ୍ତ ବା କୁଷ୍ଟ ରୋଗୀ ପରି ଆପଣମାନଙ୍କୁ ପୃଥକ୍ କରି ରଖି ଦିଆ ହେଉଛି କି ନା ?—ଆପଣମାନେ ଉଠନ୍ତୁ—ଆପଣମାନେ ଜାଗନ୍ତୁ—ବିଦ୍ରୋହ ଘୋଷଣା କରନ୍ତୁ । ଅସୁର-

ଦାନନୀ ଶକ୍ତି ଯେଣି ଗ୍ରହି ପକାନ୍ତୁ, ପୁରୁଷର ଗର୍ବ
ଯେତେବେ ଏହି ଭଳି ବାର୍ଦ୍ଧ-ନକ୍ଷେପର ବେଢ଼ା-ପାଚେରୀ···।

ଗୀତା—ଶୁଣୁଛ, ଶୁଣୁଛ, ମନୀଷା ? .....ତା'ପର ?···

ଚତ୍ପତି—ବକ୍ତୃତା ମୋ'ର ଶେଷ ନ ହେଉଣୁ, ମହିଳାଟି ବସି
ପଡ଼ିଲେ ମୋ' ପାଖରେ।

ଗୀତା—ମହିଳାଟିର ତେବେ ସାହସ ଅଛି। ( ତାଳି ଦେଲେ )

ଚତ୍ପତି—ମାଫ, ବସ୍ ଭିତରେ ଏହି ଦୃଶ୍ୟ ନେଇ ଅସ୍ପଷ୍ଟ ସ୍ୱରରେ
ଯେଉଁ ଟୀକା-ଟିପ୍ପଣୀର ଢେଉ ଖେଳି ଯାଉଥିଲା—
ସେଥିରେ ମୁଁ ସାଙ୍ଗେ, ସାଙ୍ଗେ ଦୁଇ ତ ଦୁଇଟାସ୍ତ ଲଙ୍କା-
କାଣ୍ଡ ଆରମ୍ଭ କରି ଦେଇଥାନ୍ତି; ମାଫ ଯା ଫଳରେ ଭଦ୍ର
ମହିଳାଙ୍କର ସମ୍ମାନ କେବଳ ନଷ୍ଟ ହେବ—ଏହି
ଭୟରେ, ପରବର୍ତ୍ତୀ ବସ୍ ଷ୍ଟାଣ୍ଡର ଅଳ୍ପ ଦୂରରେ
ଚଳନ୍ତା-ବସ୍‌ରୁ ଡେଇଁ ପଡ଼ିଲି—।

ମନୀଷା—[ ଅଉ ସହି ନ ପାରି, ବା ସ୍ଥିର ଥାଇ ନ ପାରି ]
ବର୍ତ୍ତମାନ, ସେହି ସମ୍ମାନ ନଷ୍ଟ କରିବାକୁ—

ଚତ୍ପତି—ଟାଣି ଆସିଛି, ସେହି ଭଦ୍ର ମହିଳା ଘରକୁ। (ହସିଲେ)

ଗୀତା—ଏଁ—ସେହି ଭଦ୍ର ମହିଳା ତୁ' ନା କ'ଣ ?

ମନୀଷା—ଦରଓ୍ୟାନ୍······।

ଚତ୍ପତି—ପ୍ରୟୋଜନ ନାହିଁ, ମନୀଷା ଦେବୀ ! ମୁଁ ନିଜେ
ଚାଲିଯିବି—ମୋର ନିଜ ଅଧିକାର ବଳରେ:—ତେବେ
ପ୍ରବେଶାଧିକାର ମୋ'ର ଅଛି କି ନା, ସେହି କଥାକୁ
ଥରେ ଚିନ୍ତା କରନ୍ତୁ ତ ! ଦେଖନ୍ତୁ, ଏ ଚିଠି ଆପଣଙ୍କର କି ?

ଗୀତା—( ଚିଠି କାଢ଼ି ନେଇ ) ହଁ, ଦେଉ [ମନୀଷାର ଚିଠି—
ଆପଣଙ୍କର ହାତକୁ ଗଲା କେମିତି ?

ମନୀଷା—ଗୀତା—

ଗୀତା—ଚୁପ୍‌କର !

ଚନ୍ଦ୍ରପତି—ପରବର୍ତ୍ତୀ ବସ୍‌-ଷ୍ଟାଣ୍ଡରେ ମନୀଷା ଦେବୀ ଯେତେବେଳେ ଓହ୍ଲାଇ ପଡ଼ିଲେ, ସେତେବେଳେ ମୁଁ ଅଦୂରରେ ଥାଇ ଦେଖିଲି—ବ'ଣଟାଏ ସେ ଗୋଟି ପକାଇ ଦେଲେ—ନିକଟକୁ ଯାଇ ଦେଖେ, ଏଇ ଶଟି । ବୋଧହୁଏ ଭ୍ରମରେ ସେ ବସ୍‌ ଟିକଟଟାକୁ ପକାଇବାକୁ ଯାଇ, ହୃଦୟର ଏହି ଶଠିଟି ପକାଇ ଦେଇଥିଲେ ।

ଗୀତା—( ମନୀଷା ଅଡ଼େ ଚାହିଁଲେ ) ହୁଁ—ଭିତରେ, ଭିତରେ ଏତେ କଥା !

ମନୀଷା—[ଅଶ୍ରୁ-ମ୍ଳାନ ଲୁଚୁଥିଲେ ଗଣ୍ଡେ ଖୋଲି ମ୍ୟାଗାଜିନ୍‌ର ପତ୍ର ଉଡ଼ାଉରେ]

ଚନ୍ଦ୍ରପତି—( ଗୀତା ପାଖ ସିଟ୍‌ରେ ବସି ପଡ଼ି ) ମୋତେ ମାଫ୍‌ କରିବେ, ଗୀତା ଦେବୀ—ଆପଣଙ୍କ ପାଖରେ ବସି ପଡ଼ିଲି ବୋଲି......।

ଗୀତା—ନା, ନା—ତା'ର କୌଣସି ପ୍ରୟୋଜନ ନାହିଁ ! ବସନ୍ତୁ—ତେବେ ମୋ'ର ନାମ ଜାଣିଲେ କିପରି ?

ଚନ୍ଦ୍ରପତି—କହୁଛି...[ ପକେଟ ଭିତରୁ ବ୍ୟାଣ୍ଡିବୋତଲ ବାହାର କଲେ ]

ଗୀତା—ଯେ' କଣ ? ( ସଙ୍କୁଚିତା ହେଲେ )

ଚନ୍ଦ୍ରପତି—ସଙ୍କୋଚ ବୋଧ କରିବେ ନି ଗୀତା ଦେବୀ !......
ଆପଣମାନେ ଶିକ୍ଷିତା—'ଶ୍ଲୀଳତାର' ମର୍ମ ବୁଝନ୍ତୁ—

ଅବରଣ ଟାକୁ ବଡ଼ କରି ଦେଖନ୍ତି ନାହିଁ ।—ମୁଁ ଭାରି
କ୍ଳାନ୍ତ, ସେଥିପାଇଁ......

ଗୀତା—ବଏ !

ଚନ୍ଦ୍ରପତି—କପେ ଗୁ ?—ଏଇ ଗୃ-ପିଅଲ ଦେଖି, ମୁଁ ହୁଏତ
ନାକେଇ ଅର୍ଡ଼ର ଦେଇଥାନ୍ତି—ତାହଲେ, ମୋର ଚେଷ୍ଟା
ଏକମାତ୍ର—

ମନୀଷା—ଗୀତା—

ଚନ୍ଦ୍ରପତି—( ବୋତଲ ରଖିଦେଲେ ପକେଟ୍ ଭିତରେ ) ଚାଃ,
ବୋତଲ ଖାଲି ।—ହଁ, କଅଣ ପଚାରୁଥିଲେ ?—ଅପଣଙ୍କ
ନାମ ଜାଣି ପାରିଛୁ ସେହି ଚିଠିରୁ ।

ଗୀତା—ଆପଣ ଅପରର ଚିଠି ଖୋଲି ପଢ଼ିଥିଲେ ?

ଚନ୍ଦ୍ରପତି—ସେହିଥିରୁ ତ ଜାଣିଲି, ଆପଣ ଦୁହେଁ ବଡ଼ ଘନିଷ୍ଠ ବନ୍ଧୁ
—ଅଜ ସେଇଥି ଜାଣି, ନିଃସଙ୍କୋଚରେ ସବୁ କଥା
ଖୋଲି କହିଲି ସିନା—

ଗୀତା—ତା' ହେଲେ ଅପଣ ମଧ ଜାଣନ୍ତି—ସମାଜ ଖେଳା ତାକୁ ନା
ଗଢ଼ା ।

ଚନ୍ଦ୍ରପତି—ଓ, ମୁଁ ସେହି ଖେଳା ଭାଙ୍ଗିଛୁ ! ( ହସିଲେ )

ମନୀଷା—ଅବଶ୍ୟ—ବାହାର ଯା'ନ୍ତୁ ଅପଣ ।

ଚନ୍ଦ୍ରପତି—ଏତେ ବ୍ୟସ୍ତ ହେବେ ନା, ମନୀଷା ଦେବୀ !—ମୋର
ଅଜ ଟିକିଏ କାମ ଅଛି—ସରିଗଲେ—

ମନୀଷା—ତା'—ହବନି'—ଅପଣ ଏଇକ୍ଷଣି ବାହାର ଯା'ନ୍ତୁ....।

ଚନ୍ଦ୍ରପତି—ମୁଁ ଯଦି ବାହାର ନ ଯାଏ—

ମନୀଷା—ଦାରୱାନ୍—ବଏ ।

ଚନ୍ଦ୍ରପତି—କେହି ନ ଅସନ୍ତି ଯେବେ !—

ମନୀଷା—ଶୁଣୁଛ ତ, ଗୀତା ?

ଗୀତା—ଅମେ ଜୋର୍ କରି ତଡ଼ି ଦେବୁଁ ।

ମନୀଷା—ହଁ, ଜୋର୍ କରି—

ଚନ୍ଦ୍ରପତି—[ ଫାଇଲ୍‌ରୁ ଖାମାର—ଅନୁଷ୍ଠାନ-ପତ୍ର ଖଣ୍ଡେ ବାହାର କରୁ କରୁ ]

Bravo ! Bravo ! ସାବାସ୍—ସାବାସ୍ ନାରୀ ! ଏହି-ପରି ଜୋର ଜବରଦସ୍ତି ନାରୀ-ଜାତି ଅଙ୍କ ଦେଖାଇବ, ଇହାହିଁ ତ ଦରକାର ।—ଅଥଚ ଝିଅଟିଏ ଜନ୍ମିଲେ, ଝିଅ-ବାପ ମାଆ ମନେ କରନ୍ତି, ଯେମିତି ବଜ୍ର ପଡ଼ିଲା—ହେଲେ, ତାହିଁକି ? ଆପଣମାନେ ସମସ୍ତେ ମୋ ସଙ୍ଗେ ଏକମତ ହୋଇ କହିବେ—ଡ୍ୟାମ୍ "ଡାଓ୍ୱାର ସିଷ୍ଟମ୍", ଅର୍ଥାତ୍ ଘୃଣ୍ୟ ପଣ-ପ୍ରଥା—ଏହି ପ୍ରଥା ନିବାରଣ ପାଇଁ ଯୁଏତ ଆପଣମାନଙ୍କ ପରି ଶିକ୍ଷିତା ନାରୀମାନେ କହୁଛନ୍ତି, 'ଆମେ ବିବାହ କରିବୁ ନାହିଁ'—„

ଗୀତା—ତା' କହୁ ନୁ ତ—

ଚନ୍ଦ୍ରପତି—ହେଲେ, କିନ୍ତୁ ତାର ଗୋଟାଏ ପ୍ରତିକ୍ରିୟା ଅଛି । ଅନ୍ତତଃ ବିବାହ-ପ୍ରଥା ଦୁନିଆରେ ରହିବହିଁ ରହିବ,—ସୁତରାଂ ତାର ଅଙ୍ଗ ସ୍ୱରୂପ ଯେଉଁ ପଣ-ପ୍ରଥା, ତାହା ମଧ୍ୟ ବର୍ତ୍ତି ରହିବା ଅସ୍ୱାଭାବିକ ନୁହେଁ ।

ଗୀତା—ଉପାୟ ?

ଚନ୍ଦ୍ରପତି—ଉପାୟ, ମୁଁ ବାହାର କରିଛି ।—ମୋର ଯେଉଁ ପରିକଳ୍ପନା, ତାକୁ ରୂପ ଦେବା ପାଇଁ ଅନୁଷ୍ଠାନଟିଏ ଗଢ଼ିଛି—ନାମ ଦେଇଛି 'ବିବାହ-ପଣ-ଦେଓ କାରିଣୀ

ଗ୍ରାମ୍ୟ ସଚିତ୍ର”—ଇଂରେଜୀରେ “ଡ଼୍ରାମାଟିକ୍ ଏଣ୍ଡ୍ ଡୋଟ୍
ଏସୋସିଏସନ୍ ।”

ମନୀଷା—ଗୋଟାଏ ଇନ୍‌ସିଓରେନସ୍‌ ଦଲାଲ୍—

ଚତୁଷ୍ପଥି—ଦଲାଲ୍ ନୁହେଁ, ମୁଁ ମାଲିକ—ମ୍ୟାନେଜିଂ ଏଜେଣ୍ଟ—
ମୁଁ ସବୁ—ସଂକ୍ଷେପରେ 'M.D. A' ।—ଏହି 'ଏମ୍-ଡି-ଏ'
ମୋର ପଦବୀ । ଏହି ଦେଖନ୍ତୁ Prospectus-
ଅନୁଷ୍ଠାନ-ପତ୍ର ।—ଯେଉଁ ପାତ୍ର ଯେତେ ଟଙ୍କା ଦଣ
ସ୍ୱରୂପ ଗ୍ରହଣ କରିବ, ତାକୁ ସେତିକି ଟଙ୍କାର ଦୁଇଗୁଣ
ବୀମା କରିବାକୁ ହେବ, ଚାକରୀ ନାମରେ ।—ଦୃଷ୍ଟାନ୍ତ
ସ୍ୱରୂପ, ଏହି ଦେଖନ୍ତୁ—ଆପଣଙ୍କର ବୟସ କେତେ ?
—ନିଶ୍ଚୟ ୧୮ । ୧୯ ଏ' ପାଖରେ, ( ଅନୁଷ୍ଠାନ ପତ୍ର
ଦେଖାଇଲେ )

ଗୀତା—ଦେଖନ୍ତୁ, 'ଏମ୍, ଡି, ଏ' ନା 'ଏମ୍. ଏ. ଡି' ମହାଶୟ,
ବୃଥା ପରିଶ୍ରମ ଆଉ କରିବେ ନା ।

ଚତୁଷ୍ପଥି—ମୁଁ ପାଗଳ ନୁହେଁ, ଗୀତା ଦେବୀ ।—ଆଜି ସେହି ଚିଠିରୁ
ଏମିତ ଗୋଟାଏ ବିବାହର ସନ୍ଧାନ ପାଇଛି, ଯେଉଁଥିରେ
ରହିଛି ମୋ'ର ପୂରା ସ୍ୱାର୍ଥ । ସେଇଥିପାଇଁ ମୁଁ ଦଲାଲ୍
ନ ପଠାଇ, ନିଜେ ଧାଇଁ ଆସିଛି ।—ସତେ, ଦେବୀ—
ଏ ସମ୍ବନ୍ଧ ଯେମିତ ମୋ'ର ନିଜର— —

ମନୀଷା—ମୁହିଁ ସମାଳ କଥା କୁହ ।—ଗୁଲ୍‌ଅ' ଗୀତା ।

[ ଗୀତାକୁ ଟାଣିନେଇ ଗୁଲ୍ ଯାଉ ଥିଲେ—ଏତିକି ବେଳେ
ଛନ୍ଦା ପ୍ରବେଶ କଲେ—ନୃତ୍ୟ-ଭଙ୍ଗୀରେ ଓ ଗୀତ-କଣ୍ଠରେ ]

ଛନ୍ଦା—                    ଗୀତ

ଗୁଟେଲି ବନେ ହେଲା ହାସେଲ ସ୍ୱପ୍ନ
(ଯେତେବେ) ଚଇତ ଚାନ୍ଦର ଜୋଛନା ଜମିଲା—
ଝାଉଁସି ଝୁରିଁଲା ଚକୋରୀ ମରମେ···ରେ
ଅଧୀର ଅଧରେ ଥରିଲା ସରମେ...ରେ
ସୁରଭି ସୋହାଗୀ ରଜନୀ ଚନ୍ଦ୍ରା ରୂପେଲି ଚାନ୍ଦ୍ରୁ ଚୁମିଲା । ୧ ।
ମାନିନୀ ଗୋ କୁମୁଦ ବଧୂ
ନରମି ନ ଯିବୁ କେବେ ଠାକିଲେ ବନ୍ଧୁ
ଚୁହିଁ ନ ଚୁହିଁବୁ ନୀରବେ ନଇଁବୁ
ରଖି ଦେଇ କଳିକା ଦରଫେଲା । ୨ ।

ମନୀଷା—ଛନ୍ଦା—

ଛନ୍ଦା—କି ନାଟକର ରିହର୍ସାଲ ହେଉଥିଲା ରେ, ମନୀଷା ?—ଏ' ଜଣେକ ସଖୀ ନାୟକ—ଆଉ ତୁ ନାୟିକା ?

ମନୀଷା—ଛନ୍ଦା—

ଛନ୍ଦା—ବାଃ, କଥାଟା ମୋ'ର ଶେଷ ହେଉ ।—ନାୟକର ଅଯାଚିତ ପ୍ରେମକୁ ଉପେକ୍ଷା କରିବ, ନାୟିକା—ଏହୁ ଥିଉରି ତ ?—ସୁନ୍ଦର—ହେଲେ, ଅଭିନୟଟା ଯା' ଦେଖାଇଲୁ ତା' ସହ ପୁରୁଣା କାଳିଆ ହୋଇଗଲା—ଏ-କାଳିଆ ଅଭିନୟ ହେଉଛି ଟିକ୍ ଓଲଟା—ନାୟକକୁ ଯେତେ ଘୃଣା କରିବ, ତେବେ ନିଜର ପାଟି ବନ୍ଦ କରିବ—ମୁହଁରେ ହସ ହସ ଭାବ ଫୁଟାଇବ—ପିଠା-ପିଠି ପଦେ ଅଧେ କଥା କହିବ—ତା' ହେଲେ ସ୍ୱୈତାନଟା ତା'ର

ଶବ୍ଦୁତାନ ଯେପରି ମର୍ମେ ମର୍ମେ ଅନୁଭବ କରିବ ।– 'ଗୃଲିଅ ଗୀତା' ଧାଡ଼ିକ, ବାଲ୍ କୁଲ୍ ଉଡ଼ାଇଦେଲେ ଭଲହେବ;
—କାରଣ ସେଇଟକ କହୁଲେ ଜଣା ଯାଉଛି, ପରସ୍ପର ଭିତରେ ଗୋଟାଏ ଲୁଗୁ-ଛପା ପ୍ରେମ ଅଛି—ଏଇ-କଥା ଯେପରି ଧରା ପଡ଼ି ଯାଉଛି ।

ଚଟ୍ ପଟି—ଆପଣ ଯଦି ମୋ'ର ପାର୍ଟନର ହୁଅନ୍ତେ—

ଛାଯା—ହେଲେ, ମନୀଷା ଦେବୀ ରାଜି ହେବେ ତ ?

ମନୀଷା – ସେ ଗୋଟାଏ ଭିତର ଲୋକ—ଦାଲାଲ, ଛାଯା!—

ଛାଯା – ଦାଲାଲ୍ ହେଉ ବା ମାତାଲ୍ ହେଉ—କଳା କୃଷ୍ଟିର ଚର୍ଚ୍ଚା ଆମେ କରୁଥାଇଁ; ତେଣୁ ଭଲ ଅଭିନେତା ହେଲେଇ ହେଲା ।—ଅଚ୍ଛା, ମହାଶୟ ! ମୁଁ ପାର୍ଟନର ହେବାକୁ ରାଜି—ବହୁତ! ଦେଖାନ୍ତୁ ତ......

ଚଟ୍ ପଟି—ଏହି ନିଅନ୍ତୁ—[ଅନୁଷ୍ଠାନ ପତ୍ରଟି ଦେଲେ]

ଛାଯା—(ପଢ଼ି) ଅଭିନୟ କେବେ ?

ଚଟପଟି—ଆଜି ।

ଛାଯା—ଆଜି ?—ହୁଁ, ମନୀଷା ! ତୁ ଏତେ ଗୁଲିକ୍, ମୋତେ ଆଶ୍ଚର୍ଯ୍ୟ କରିଦେବୁ ବୋଲି ଟେଲିଫୋନ୍ ରେ ଏ' କଥା ଆଦୌ ଜଣେଇ ନଥିଲୁ ।—ଦେଖେଁ ପାର୍ଟଟା—

ଚଟ୍ ପଟି—ସମସ୍ତ ବହୁତା, ମିସ୍—

ଛାଯା—'ସମସ୍ତ ବହୁତା !' ଏଁ—Nonsense, ଯେଉଁ ଗୋଟାଏ ବାମାର ଅନୁଷ୍ଠାନ-ପତ୍ର—'ଦ ନ୍ସିଁରେନ୍ସ ପ୍ରମ୍ଟ୍ରେକ୍ଟେସ୍' ।

ଚଟ୍ ପଟି—ଆପଣଙ୍କର ପ୍ରତିଭା ଯେପରି, ସେଥିରେ ଯାର ବିଷୟ ବସ୍ତୁ ଅଭ୍ୟସ୍ତ କରିବାକୁ ସେକେଣ୍ଡେ ବି ଲାଗିବ ନାହିଁ ।

ଛଦା—ଡ୍ୟାମ୍ ଇଟ୍—ମନୀଷା । ତୁ ମଜା ଦେଖୁଚୁ ତ ?—ଅଭିଜାତ
ସମାଜରେ, ଏ' ଭଳି ଜଣେ ଇତର ଲୋକକୁ
ନେଇ ଏପରି ଥଟ୍ଟା ପରିହାସ—ଏ' ମୋ'ର ପ୍ରଥମ
ଥର ଚରମ ଅଭଦ୍ରତା ।

ମନୀଷା—ପ୍ରେସ କଳାକୃଷ୍ଟି-ଚର୍ଚ୍ଚାର ଗୋଟାଏ ଅଙ୍ଗ । (ଗୀତାକୁ
ଲକ୍ଷ୍ୟ କରି ) ହଁ, ୟାଙ୍କ ସଙ୍ଗେ ପରିଚୟ ହେଲା ନାହିଁତ ।

ଛଦା—ଏଠି ନୁହେଁ—କ୍ଷମା କରିବେ । ଆସନ୍ତୁ ଭିତରକୁ—
( ଗୀତାକୁ ଘେନି ଗୃହଗଲେ )

ମନୀଷା—[ ଅନୁସରଣ କଲାବେଳେ ଥରେ ଫେରି ଗୃହିଁଲେ ]

ଚେଚଟି—ବାଇ ବାଇ—ଜି ହଁ, 'ଜୟହିନ୍ଦ'—ପୁଣି ଆସିବ—
ବର୍ତ୍ତମାନ ଅଫିସ୍ ଟାଇମ୍ ହୋଇ ଗଲାଣି । (ଗମନୋଦ୍ୟତ
ହେଲେ )

[ ଏତିକି ବେଳେ ନେପାଳି ଦରୱାନ୍ ସଙ୍ଗେ ବାଦ୍-
ବିତଣ୍ଡା କରୁ କରୁ ମିଃ ଦାସ୍ ପ୍ରବେଶ କଲେ ]

ଦରୱାନ୍—ନାମ୍ କଭି ନେଇ ଛୋଡ଼େଙ୍ଗେ । ବାହାର ନିକଲିଏ,
ନେହି ତୋ ଏହି ଭୁକାଲିସେ ଫାଡ଼୍ ଡାଲେଙ୍ଗେ ।
ବୁଢ଼ା ସାହେବକା ହୁକୁମ୍, ମିସି ବାବାକା କାମରାମେ
କୋଇ କିସମ୍‌କା ମଧ୍ୟାନା ଆଦ୍‌ମୀ ବିନା ପର୍ମିଟ୍‌ସେ
ନେହି ଘୁସେଙ୍ଗେ,—ମଗର୍, ଏକ୍ ସାହେବ୍‌କୋ ଛୋଡ୍
କରି । ପିତାଜି ହାମାରି ହାମ୍‌କୋ ଅଜ୍ ବଦ୍‌ଲି
ଦେ'କେ ଗାଁଓ ପର ଚଲ୍‌ଗୟା— ଔର ବାତ୍ ସମଝାଦିଆ ।

ମିଃ ଦାସ୍—ତୋ ସାହେବକା ବାତ୍ ବୋଲ୍‌ତେ ହୋ, ଓଇ
ସାହେବ୍ ହାମ୍ ହେ, ଦରୱାନ୍ ।

ମାରଓ୍ୟାନ—ଜୁମ୍ ଝୁଣ୍ଟା ହୋ—ସଚା ସାହେବ୍ ଥୋ ଅ ଗିୟା—
ହାମ୍‌କୋ—ବକ୍‌ସିଁ୍ ମିଲା—ଓହ୍ୱତ—( ଚୈତପଟିକୁ ଦେଖାଇ ) ଅଇଏ, ଅଇଏ—ଫାଟକ୍ ପର ହୋଇ ନେହୁ—"ଫିନ୍ କୋନ ହ୍ୟାୟ ( ଗୃହଚଳେ )

ଚୈତ୍ ପଟି—ହାଃ—ହାଃ—ହାଃ—

ମିଃ ଦାସ୍—ହୁ ଇଉ ? (Who You)

ଚୈତ୍‌ପଟି—ଅରେ, ତୁ ଦାସ୍ ସାହେବ ?—କେବେ ବିଲାତରୁ ଅସିଲ୍ କହ ତ ? ଥରେ ଦେଖା ବି କଲୁନାହଁ ?—ଖବର ଦେଇଥିଲେ ମୁଁ ନିଜେ ଯାଇଁ ଦେଖା କରିଥାନ୍ତି, ବନ୍ଧୁ !
—ଗୁଡ଼—ତୋର ସେହି ଚିଠି ଶ୍ରେଷ୍ଠ—

ମିଃ ଦାସ—( ଚମକି ଉଠିଲେ )

ଚୈତ୍ ପଟି—ଆରେ ସେହି ଚିଠିମ, ତୋ'ର ମନୀଷାକୁ ଲେଖିଥିଲ୍ ଯେଉଁ ଝଣ୍ଡ୍ରେ—ଗୋଟାଏ ଉତ୍ତହାସ—ସେ ଫିଙ୍ଗି ଦେଇଥିଲା—ମୁଁ ଗୋଟାଇଆଣି ଦେଇ ଦେଇଛୁ । ତୋର ହାତ-ଲେଖା, ସେ'ତ ଭୁଲିବାର ନୁହେଁ—ସେଇ ଲେଖା ସଙ୍ଗେ ଚିଠିର ଲେଖାର ମେଳ ଦେଖି, ତୋ'ର ଚିଠି ବୁଝି, ଚିଠିଟି ଅମୂଲଚୁଲ ପଢ଼ିଲି—ଆଉ ଯେଥିରୁ ଯାହା ଯା' ବୁଝିଲି,—କନ୍ ଗ୍ର୍ୟାଚୁ୍ୟଲେସନ ଭାଇ, କନ୍ ଗ୍ର୍ୟାଚୁ୍ୟଲେସନ୍—ହଁ, ମୋ'ର ଭାବ ନୂଆ-ବୋ ସଙ୍ଗେ ଥଟ୍ଟା-ପରିହାସ ଯା' କରିବାର କଥିଛୁ—ଭାବ-ଦୋସ୍ତି ବି ବେଶ୍ ଜମେଇ ନେଇଛ—ହଁ, ଦେଖ, ଦୁହିଅର ଥିବୁଟି ଭାଇ !—"ବସ୍" ତାଙ୍କରେ, ମୋ'ର ଉପଦ୍ରବ ଫଳରେ ଚିଠିଟା ଫିଙ୍ଗି ଦେଇଥିଲେ, ମନୀଷା ଦେବୀ ସ୍ତ୍ରୀଙ୍କୁ—ଏଥର ବାସ-ଭବନରେ, ମୋ'ର ଉପଦ୍ରବ

ଫଳରେ, ଗଟି-ଲେଖକଙ୍କ ଯେମିତ ଫିଙ୍ଗ ନ୍ ଦଅନ୍ତି, ଗସ୍ତାଙ୍କୁ
—ହା଼ଃ—ହାଃ—ହାଃ—ହାଃ—

ମିଃ ଦାସ—ହ୍ୱାଟ୍ ନନ୍ସେନସ୍ ତୁ ଇଜ୍ ଟକ୍ । କ'ଣ ଏଣୁ ତେଣୁ ଗୁଡାଏ ବକୁଚ ?

ଚଣ୍ଡୀପତି—ସତେ ଭାଇ, ମୁଁ ସେନ୍ସ ହରାଇ ପକାଉଛି । ତୁ ବିଲାତରୁ ଫେରଚୁ—ବାରିଷ୍ଟର ହୋଇ ଆସିଚୁ । ତୋ'ର ମନର ବାସନା ପୂର୍ଣ୍ଣ ହୋଇଚ;—ଏଥିରେ ତୋ ଅପେକ୍ଷା ମୋ'ର ଆନନ୍ଦ ଯେମିତ ବେଶୀ ଉଛୁଳି ଉଠୁଛି ।—ଆଜି ମନେ ପଡ଼ି ଯାଉଛି, ସେହି ବାଲ୍ୟଜୀବନର କଥା—ଆଉ ବିଃ ଏଃ ପରୀକ୍ଷା ଦେଲାବେଳେ ବଡ଼ାର ସେଇ ଅପଦଶୋଷ, ଓ ଦୀର୍ଘ-ଶ୍ୱାସ, "ମୁଁ ଯଦି ତୋ'ପରି ସ୍କଲର ହୋଇ-ଥାନ୍ତି, ତେବେ ବି. ଏ. ପାଶ୍ କଲା ପରେ ବିଲାତ ଯିବା ମୋ'ର ଆଉ ଅଟକନ୍ତା ନାହିଁ—"

ମିଃ ଦାସ—ଏ'ଟା ମାଡାଲ୍ ନା କ'ଣ ?—

ଚଣ୍ଡୀପତି—ବାସ୍ତବିକ ତୋ'ର ସେହି ଅକ୍ଷେପ ମୋତେ ପାଗଳ କରି ଦେଇଥିଲା—ମୋ'ର ଇନ୍‌ଭେନ୍‌ଟିଭ୍ (Inventive) ବ୍ରେନ୍—ଉର୍ବର ମସ୍ତିଷ୍କ—ତତ୍‌କ୍ଷଣାତ୍ ଗୋଟିଏ ଉପାୟ ଆବିଷ୍କାର କରି ପକାଇଲା । ତାରି ଫଳରେ—ତୁ ଲେଖିଲୁ ପରୀକ୍ଷା ହଲ୍ ରେ ତୋ'ର ଉତ୍ତର ଖାତାରେ ମୋ'ର ନାମ, ଆଉ ମୋ'ର ଉତ୍ତର ଖାତାରେ ମୁଁ ଲେଖିଲି ତୋ'ର ନାମ ।—ପରୀକ୍ଷାର ଫଳ ବାହାରିଲା, ତୁ ପାଶ କରିଚୁ—ମୁଁ ଫେଲ୍ ହୋଇଚି ।

ମିଃ ଦାସ—ଅଚ୍ଛା ମୁସ୍କିଲ ତ ?

ଚନ୍ଦ୍ରପତି—ତା' ପର, ତୁ ଜାଣୁନା ବଂଧୁ—ଜୀବନ ଇତିହାସର ସେଇ ଅଧ୍ୟାୟ—ମୁଁ ଫେର ପରୀକ୍ଷା ଦେବ ମନେ କଲି, ମାତ୍ର ଭୟ ହେଲା—ତୋର ପାଶ-କୁଅଗ୍ରୈନ୍ଦ୍ରା ଯଦି ସେଇ ହୃଦରେ ଧରା ପଡ଼ିଯାଏ ।—ସୁତରାଂ ସେଥିରୁ ନିବୃତ୍ତ ହେଲି ।—ଯେଉଁ ସ୍ୱାର୍ଥ ତ୍ୟାଗ ଧନେ ମୋତେ ଅନୁପ୍ରାଣିତ କରିଥିଲା, ତାକୁଇ ଅମ୍ବ-ସମ୍ବଳ କରି ଜୀବନର ଜୟ-ଯାତ୍ରା ପଥରେ ଅଗ୍ରସର ହେଲି—ସମାଜର କଲ୍ୟାଣ ଓ ସେବାକୁ ବ୍ରତ କରି, ନାନା ଅନୁଷ୍ଠାନ ଗଢ଼ିବାକୁ ଲାଗିଲି; କିନ୍ତୁ ସେଥିରେ କେବଳ ଲାଞ୍ଛନା ଓ ଦାରିଦ୍ର୍ୟ ସାର ହେଲା ।—ସେଥିପାଇଁ ଅଜି ହୋଇଚି ସମାଜ-ଦ୍ରୋହୀ ମାତାଲ୍ ଏମ୍. ଡି.ଏ; କିନ୍ତୁ ଲୋକେ କହନ୍ତି ଏମ୍.ଏ.ଡି:—

ମିଃ ଦାସ—ଏମ୍. ଏ. ଡି.—ମ୍ୟାଡ୍—ବଦ୍ଧ ପାଗଳ——

ଚନ୍ଦ୍ରପତି—ତୁ' ବି ସେଇୟା କହିବୁ, ବଂଧୁ ?

ମିଃ ଦାସ—ଅଚ୍ଛା ଗୋଟାଏ ପାଗଳ, ମାତାଲ୍ ପାଲରେ ପଡ଼ିଲା ତ ମଣିଷ ?

ଚନ୍ଦ୍ରପତି—ପଡ଼ିଚୁ ଯେତେବେଳେ, ଅଉ ତୋତେ ଛାଡ଼ୁଚି ? ହାଃ—ହାଃ—ହାଃ—ହାଃ—

ଦରୱ୍ୟାନ୍—(ପ୍ରବେଶ କରି ମଝିରେ ଛିଡ଼ା ହୋଇ) ନେହିଁ, ନେହିଁ ସାହେବ, ହାମକୁ ଛୋଡ଼୍ ଦିଜିଏ । (ମିଃ ଦାସ ପ୍ରତି) ସାବ୍ ! ବାହାର ଚଲିଏ, ସାବ୍—ନେଇତ ହାମାରା, ନୌକ୍‌ରି ଛୁଟ୍ ଯାଏଗା—

ଚନ୍ଦ୍ରପତି—ଦେଖୋ ଦରୱ୍ୟାନ୍‌ଜୀ । ଏକ୍ ଅଦ୍‌ମୀ ରହେନେସେ ତୁମାରା ଛୁଟି ।

ଦରଓ୍ୟାନ—ଜି । (ଗୃଲିଗଲ)
ମିଃ ଦାସ—ଲେଟ୍ ମି ଗୋ ଦେନ୍ (Let me go then) ?
ଚଟ୍ ପଟି—ସିଟ୍ ୟୁଉ ମଷ୍ଟ୍ (Sit you must)
ମିଃ ଦାସ—ନା—
ଚଟ୍ପଟି—ଷ୍ଟପ୍—[ ମିଛେ ମିଛେ ପକେଟରୁ ପିସ୍ତଲ ବାହାର କରିବାର ଅଭିନୟ କଲେ ]' Hands up । (ହ୍ୟାଣ୍ଡସ୍ ଅପ୍)
ମିଃ ଦାସ—ପିସ୍ତଲ ।
ଚଟ୍ପଟି—ହିଁ, ଖୁନ୍ କରିବ,—ଖୁନୀ ଅସାମୀକୁ ଖୁନ୍ କରିବ, —ନହେଲେ ବାଂଧିକ ନୂହିଁ ରେ, ବଂଧୁକ ନୁହେଁ । (ପିସ୍ତଲ ପରିବର୍ତ୍ତେ ରୁମାଲ ବାହାର କରି ) ଏଇ ‹ତୋର ସେଇ ରୁମାଲ, ବଳିତ ଗଲାବେଳେ ଦେଇଥିଲୁ—ଲେଖା ରହିଛି, ବଂଧୁ ସ୍ମୃତ—ହାଃ—ହାଃ—ହାଃ—

( ଗୃଲିଗଲେ )

ମିଃ ଦାସ—ଏ ପାପ-ଗ୍ରହ ଏଠାକୁ କପରି ଅସିଲା ?---ଯା'କୁ ମୁଁ ମୋର ମର୍ଯ୍ୟାଦା ବାହରେ ଏଭଏଡ଼୍ (Avoid) କରି ଗୃଲିଛି, ସେଇ ଗଳଗ୍ରହ ମୋ'ର ଜୀବନ-ମରଣର ଘାଟି ଯାଗାରେ ଉପସ୍ଥିତ ହେଲା କଦରେ ?—ସେ କ'ଣ ମୋର ଜଣେ ରାଇଭେଲ୍ (Rival) ? ଛି, ଛି—ମୁଁ ଖାଲି ଜେଲସ୍ (Jealous) ହୋଇ ପଡ଼ିଛି;—ତାହାଁ ଜଣେ ବଳିତ ଫେରନ୍ତା ବାରିଷ୍ଟର – ଅଉ ତାହାଁ ଜଣେ, ଲେଫାର ଦଲାଲ୍—ଏୟାଣ୍ଡ ମନୀଷା ଇଜ୍ ଏ କଲଚର୍ଡ ଗାର୍ଲ ଅଫ୍ ଏକ୍ସପ୍ସେନାଲ୍ ମେରିଟ୍ (and Manisa is a cultured girl of exceptional merit)

( ମନୀଷାର ଛବି ଅଙ୍କେ ରଖି ) ମନୀଷା ! ମନୀଷା !
କେତେ ଦିନ ଆଉ ମତେ ବୁଲେଇ ମାରିବ ? ତୁମେଇ
ମୋର ସଂସାର-ସାଗରରେ ଏକମାତ୍ର ଧ୍ରୁବ-ତାରା ।
ପ୍ରସନ୍ନ ହୁଅ, ମନୀଷା—ଆଶା ଦିଅ—-ଆଶା ଦିଅ-—
[ ରାମ ଦୁଲାଲ ଓ ଗୀତା ପ୍ରବେଶ କଲେ । ରାମ ଦୁଲାଲ
କାନରେ ଅଳ୍ପ ଶୁଣନ୍ତି, ଆଖିରେ ଅଳ୍ପ ଦେଖନ୍ତି ]

ରାମ—ବେଶ୍ ବେଶ୍—କାହିଁ, କାହିଁ, ସେ ? ଆଜି ଗୋଟାଏ
ଫଏସଲ୍ କରିବି ।

ଗୀତା—ବାରିଷ୍ଟର ନୁହେଁ—ସ୍ୱେ ଗୋଟାଏ ଦଲାଲ ।

ରାମ—"ଦୁଲାଲ୍" "ଦୁଲାଲ୍" ? ଠିକ୍ କହୁଛୁ, ଗୀତା—ବଡ଼ ଘରର
ଟିଲା—ବଡ଼ ଟେଲ-ବସରିଅ ଥିଲା ସେ ।

ଗୀତା—ମୁଁ ଯା' କଥା କହୁଛି, ସେ ଗୋଟାଏ ପାପ—

ରାମ—ହଁ, ତା' ବାପ ଥିଲା ମୋ'ର ଘନିଷ୍ଠ ବନ୍ଧୁ—ଜୁଆ ଖେଳି
ସବୁ ନଷ୍ଟ କଲା—ଯା' ହେଉ, ପୁଅଟି କୌଣସି ମତେ
ବିଲାତ ଯାଇ ବାରିଷ୍ଟର ହୋଇ ଆସିଛି ।—ମନୀଷା ତା'
ସଙ୍ଗେ ଭାବ-ପ୍ରୀତି କରୁଛି, ବେଶ୍ କରୁଛି—ଆଉ
ଡେରି କାହିଁକି ?—କାହିଁ—କାହିଁ ସେ ?

ଗୀତା—[ ରାମ ଦୁଲାଲ ଏମିତି ଓଲଟା ବୁଝିବାରୁ ଭାରି ବ୍ୟତିବ୍ୟସ୍ତ
ହେଉଥିଲେ ] ତମକୁ ଆଉ ବୁଝେଇ ପାରିବି ନାହିଁ—
ନିଜେ ଯାଇ ଦେଖ । [ ମନୀଷା ଓ ଛନ୍ଦା ସେଇ
ସମୟରେ ସିଢ଼ିବାଟେ ଓହ୍ଲାଇ ଆସିଲେ ]

ମନୀଷା—ଏବେ ସୁଦ୍ଧା ଯାଇ ନି, ଗୀତା ?

ଗୀତା—[ ଦାସ୍ ଅଡ଼କୁ ନଜର କରାଇ ଦେଲେ ]

ଛନ୍ଦା—( ସ୍ୱର ଧରି ) ସଖି, ମଧୁ ଗନ୍ଧ କି ଗୋ ଯାଇପାରେ ଅଳି—

ମନୀଷା—ଦଲ ଯଦ ନ ଦେଉଛୁ, ତେବେ ମୋ ନାଁ—

ଛନ୍ଦା—ଏମିତ ଅଃକ ଗଳ୍ପ ଯେ—

ସ୍ୱମ—( ସେତେବେଳକୁ ପାଖକୁ ଯାଇ ) ଯେ ଛବ ଅଡ଼କୁ ତ ଜୀବନ ଭର ଅନାଇ ଦେଖୁଥିବ ସ୍ୱାଇ, ଏ' ଛବ ଅଡ଼କୁ ଥରେ ଅନାଅ—ଜୀବନ ଭର୍ ଥରେ ଦେଖିନାଅ—

ମିଃଦାସ—[ ଫେର୍ ଗୃହଁଲେ ସମସ୍ତଙ୍କ ଅଡ଼େ ]

ଗୀତା—ମିଃ ଦାସ —!

ମନୀଷା—[ ଲଜରେ ପଳାଇ ଯାଉଥିଲେ ]

ଛନ୍ଦା—ତା' ହବ ନ—ଏଭାବେଳକେ ନାଟକୀୟ—ସ୍ୱାଲ୍ଡର କହନ୍ତ ସର୍ ପ୍ରାଇଜ (Surprise) ।

ଗୀତା—ବେଶ୍ ଠକାଇ ଛନ୍ତ ଯା ହେଉ, ବାରଷ୍ଟର ସାହେବ ! ହେଲେ, ପ୍ରେମ-କାରବାରରେ, ଅପଣଙ୍କର ମହକ୍କଲଟି ଦେଉଳିଅ ହେବାକୁ ବସିଛନ୍ତ—ଏବେ ଉଦ୍ଧାର କରନ୍ତୁ ।

ମି: ଦାସ—ପାର୍ଟି ନ ଚେହ୍ନି କାରବାର କଲେ, ଠକିବା ସ୍ୱାଭାବିକ୍—ଏବେ ବାରଷ୍ଟରର ହାତ କ'ଣ ?

ଗୀତା—ଅଜା ! ମନୀଷାର ହାତକୁ ଦୁଇହାତ କର ପଚାନ୍ତୁ ତା ଅଜ୍ଞା—

ସ୍ୱମ—ଭଜ ?—ରଜ ? ବେଶ୍, ବେଶ୍—ମୁଇ ସ୍ୱଜ-ଛୁଟାର ଯୁଗ - ଗଣ୍ଡେଇ ଯଦେଇଲେ ହେଲା—

ଛନ୍ଦା—ଅସନ୍ତୁ, ବାରଷ୍ଟର ସାହେବ—[ ମିଃ ଦାସ୍‌ର ହାତ ବଜ୍-ମୁଷ୍ଟିରେ ଧର ଟାଣି ଅଣିଲେ ଏବଂ ଗୀତା ମନୀଷାକୁ ଟାଣି ଅଣୁଥିଲେ ]

ମନୀଷା—ଗୀତା !

[ ସ୍ୱମ ଦୁଇଲ ଦୁହିଁଙ୍କ ହାତ ଯୋଡ଼ି ଦେଲେ ]

ଛଦା—ଗୀତ ? ମୁଁ ଗାଉଛି—

ଗୀତ

ମିଳନ ଲଗନ ଯାଏ ବିତି ରେ ବନ୍ଧୁ ଅ
ନୟନେ ନୟନ ଅଟର କଷି ଦେ—କଷି ଦେ
ସବୁଜ ସଜଡ଼ା ଡାଳ ମହକ ମଲ୍ଲୀ ବକୁଳ
(ତୋର) ଲୋଟଣୀ କବରୀ ମୂଳେ ଖୋଷି ଦେ—ଖୋଷି ଦେ ।
ନାଗର ନୂଆ ଚପଳ ପ୍ରୀତ ବାଉଳା
ସରମ ନ ମାନିବ ସେ କୁହୁକ ବାଲା
ତୁ ଅପଣା ଭୁଲ୍ ବାରେ ନବ ଛଇଲୀ ଟେ
ବଟୁଲି ଅଧର ଭରି ହସି ଦେ—ହସି ଦେ ।

[ ଗୀତ ଶେଷ ହେଲା ବେଳେ ଚଟପଟି ସାହେବ ପ୍ରବେଶ କଲେ—ବ୍ୟାଗରେ ଥିବା ଗୀପା ପତ୍ର ଓ ଅଳଙ୍କାର ବାକ୍ସରେ ଥିବା ହାରଟିଏ ଦେଖି ]

ଚଟପଟି—ଅଭିନନ୍ଦନ, ବଂଧୁ ! ଅଭିନନ୍ଦନ ! ମୁଁ ଜାଣେ—ପ୍ରଜାପତିର ନିବନ୍ଧ, ନିଶ୍ଚୟ ଘଟିବ ଏବଂ ତାହା ଅଜ—; ସୁତରାଂ ମୋର ବଂଧୁ-ପତ୍ନୀଙ୍କୁ ଉପହାର, ଏଇ ରତ୍ନ-ହାରଟି—ଅଜ, ବଂଧୁଙ୍କୁ "ମୋ'ର ବିବାହ-ପଣ-ନିବାରଣୀର" ଏହି ଅନୁଷ୍ଠାନ ପତ୍ରଟି । ହଁ, ଅଭିର ଯୌତୁକର ମୂଲ୍ୟ ହିସାବରେ, ଅନ୍ତତଃ ୨୫ ହଜାର ଟଙ୍କାର ଜମା କରିବେ, ମୋର ବଂଧୁ—ବଂଧୁ-ପତ୍ନୀଙ୍କ ନାମରେ, ଏହି ଦାବୀ ଜଣାଉଛି—ଜୟ ହିନ୍ଦ୍—



## ପ୍ରଥମ ଦୃଶ୍ୟ

[ ମନୀଷାର ସୁସଜ୍ଜିତ କକ୍ଷ । ମନୀଷା ଗୀତ ଗାଇ ଗାଇ ପ୍ରୀତି-ଉପହାରର ସେହି ମୋତିମାଳାଟି ଧାରଣ କରି, ମୁକୁର ସମ୍ମୁଖରେ ପ୍ରୀତି-ବିହ୍ୱଳ ଭାବରେ ଆପଣାକୁ ଦେଖୁଥିଲେ ଓ ଅନ ମନରେ ଗାଉଥିଲେ ]

ଗୀତ

ଅଗିନାରେ ଉଡଲା ଯଉବନେ ଜୁଆର (ମୋର)
( ନୂଆ, ନୂଆ ) ସବୁଜ ସ୍ୱପନେ ଲାଗିଲା ରଙ୍ଗ
କଅଁଳ ମୋ ମନ ଦୁଆର ।
ଓହଳା ଅଶା ଛଡି ଛପିକା ସାରୁ ସରମ ଘେରଲା—
ହାଲୁକା ସ୍ମୃତି ହେଲା ଗୁଡିଁକା—ଅକୁହା ଦରଦ ଭରଲା
କି କଥା ଗୋପନେ ଗୁମୁରୁ ସାରଲା
ଅଚହ୍ନା ସୋହାଗେ ଢାହାର । ୧ ।
ମୁକ୍ତ ବହଙ୍ଗୀ ମୁଁ ହାରଲି ଦଶା—
ଭଦ୍ର ବାଦଲ ତଳେ ତଳେ ଜାଗିଲା ପିୟାସା
ସରମ ଉଚ୍ଛୁଳା ମୋ ରୂପ ସୁଷମା
ଲେଉଟିଲା ପରଶ ନୀହାର । ୨ ।

[ ଗୀତା ପ୍ରବେଶ କଲେ, ହାତରେ ସେହି ଗୀତା-ପୋଥି ]

ଗୀତା—ମନୀଷା ।

ମନୀଷା—[ ହାରଟାକୁ ଘୋଡ଼ାଇବାକୁ ଯାଉ ଥିଲେ ]

ଗୀତା—ଅଉ ଘୋଡ଼ାଉ ଛଉ ?

ମନୀଷା—ମୁଁ ତ ଘୋଡ଼ାଉ ନା—

ଗୀତା—ଅଉ ?

ମନୀଷା—ଘୋଡ଼ାଉଛି ସମାଜ—ସମାଜର ଚଳନ୍ତା-ସୀମାରେଖା ସୀମାହୀନ ହେଉ, ଏଇଟା ମୁଁ ଚାହେଁ—

ଗୀତା—ଜୀବନର ବ୍ୟବହାର-କ୍ଷେତ୍ରରେ ଅନେକ ବେଳେ ସମାଜର ଚଳନ ସଙ୍ଗେ ନିଜକୁ ଚଳାଇ ଦେବାକୁ ହୁଏ, ମନୀଷା !

ମନୀଷା—କହୁଛ, ହେଲେ ମନ ଚଳିଲେ ତ-

ଗୀତା—ଗୀତା ଅଧ୍ୟାଏ ଅଧ୍ୟାଏ ଏଥର ପଢ଼, ଦେଖି—

ମନୀଷା—ହେଲେ, ଗୀତାର ମର୍ମ ତ—'ତ୍ୱୟା ହୃଷିକେଶ ହୃଦି ସ୍ଥିତେନ ଯଥା ନିଯୁକ୍ତୋଽସ୍ମି ତଥା କରୋମି'—

ଗୀତା—ତୁ ମର ।

ମନୀଷା—ଗୀତା ! ତୋର ଦୁଃଖ ହେଉଛି—ସେଇ ଚନ୍ଦ୍ରମଣି ସାହେବର ଅନୁଷ୍ଠାନକୁ ମୁଁ ଏତେ ଶ୍ରଦ୍ଧା କରେ ବୋଲି—

ଗୀତା—ହଁ, ଗୋଟାଏ ମାତାଲର ଅନୁଷ୍ଠାନ—ସେଇଥିପାଇଁ ।

ମନୀଷା—ହେଲେ, ମୁଁ ଶ୍ରଦ୍ଧା କରେ ମାତାଳର ଉଦ୍ୟମକୁ—ମାତାଲକୁ ନୁହେଁ—। ଅଥଚ ଗୀତାର ସାର କଥା,—ସର୍ବ ଭୂତରେ ଭଗବାନ୍ ବିରାଜମାନ; ସୁତରାଂ ସେହି ମାତାଲ୍ ଭିତରେ ବିରାଜମାନ ରହିବେ,—ଏ' କଥା ନ ହେବ କାହିଁକି ?

ଗୀତା—ହେଲେ, ତୁ ଯେମିତି ସେ ଭୂତ ଅଡ଼େ ବେଶୀ ଢଳି ପଡ଼ୁଛୁ—ଏଇଟା ମୋ ମନ କହୁଛି । ତା' ନ ହେଲେ—

ମନୀଷା—'ତା ନ ହେଲେ' ?

ଗୀତା—ମିଃ ଦାସ ଏକ ଡାଳରେ, ଅଉ ତୁ ସେଡାଳରେ ବନ୍ଧ ନ ଥାନ୍ତୁ—ଅନ୍ତତଃ ମିଃ ଦାସ ଅଜ ମନୀଷାର ମନ-ବସନ୍ତର ଦୋଳି ଘୁଣ୍ଟ, ତଡ଼ା'ର ଟେଲିମ୍-ଜାଲରେ ଛନ୍ଦ ହୋଇ ପକ୍ଷୀ ବନ୍ଧ ନ ଥା'ନ୍ତେ ।

( ଚାଲିଗଲେ )

ମନୀଷା—ଗୀତା – ଗୀତା ।

[ ବେରୁବୁାମ ପ୍ରବେଶ କଲେ ]

ମନୀଷା—ଖବର କ'ଣ ବେରୁବୁାମ ? ଯାଇଥିଲ M.D.A, ସାଙ୍କ ଅଫିସକୁ ?

ବେରୁ—ଯାଇଥିଲି, Madam ।

ମନୀଷା—ଦେଖା ହେଲା ଚଟ୍‌ପଟି ସାହେବଙ୍କ ସଙ୍ଗେ ?

ବେରୁ—ନା, ସେବେ ଖବର ଦେଇ ଅଛନ୍ତି ।

ମନୀଷା—କ'ଣ ?

ବେରୁ—ଜଲ୍‌ଦି ବସିନ୍ତୁ, ଯେମିତି ଦେଖା କରନ୍ତୁ ଥରେ—

ମନୀଷା—କିନ୍ତୁ ବୁଝିଥିଲ, ପ୍ରିମିୟମ ଟଙ୍କା ଦିଅ ହୋଇଛି କି ନା ?

ବେରୁ—ବଡ଼ବାବୁ କହିଲେ, ଟଙ୍କା ଜମା ଦିଅ ହୋଇନାହିଁ ।

ମନୀଷା—କିନ୍ତୁ ମୁଁ ତ Mr Das ଙ୍କ ହାତରେ ପଠାଇଥିଲି— ନିଶ୍ଚୟ ତାଙ୍କ ଅଫିସରେ କେହି ଟଙ୍କା ଗୋଳମାଳ କରିଛି । ତୁମେ ବୁଝ, ଦରକାର ହେଲେ ଗୋଟାଏ ମକଦମା କର—ଏ ଧପ୍‌ପାବାଜି ଚଳିବ ନାହିଁ ।

ବେଗ୍ସ—ନା ମାଡାମ୍, ସେଠି ତ ଟଙ୍କା ଜମା ହୋଇ ନ,
ମୁଁ ବୁଝିଛି ।

ମନୀଷା—ତେବେ ?

ବେଗ୍ସ—ସାହେବ ସେ ଟଙ୍କା ଜମା ଦେଉଛନ୍ତି କାବୁଲିବାଲା ଖାତାରେ ।

ମନୀଷା—କାବୁଲିବାଲା ଖାତାରେ, କାହିଁକି ?

ବେଗ୍ସ—ସାହେବ ଯେଉଁ ଟଙ୍କା ଧାର କରଛନ୍ତି, ସେଥିରେ ଅସୁଲ
ପଡ଼ୁଛି ।

ମନୀଷା—ମିଃ ଦାସ୍ ଟଙ୍କା ଧାର କରଛନ୍ତି ? କଏ କହିଲା ତୁମକୁ ?

ବେଗ୍ସ—ଠିକ୍ ମନେ ପଡ଼ୁନାହିଁ, ମାଡାମ । କଉଣି ସବୁ ଗହଣାପତ୍ର,
ପୋଷାକ ଶାଢ଼ୀ କିଣା କରିବା ଲାଗି ଦୁଇହଜାର ଟଙ୍କା ଧାର
କରଛନ୍ତି ।

ମନୀଷା—ଓଃ ବୁଝିଲି—ଅଚ୍ଛା, ମୁଁ ଯେଉଁ ଚେକ୍ ଦେଇଥିଲି, କଏ
ଭଙ୍ଗାଇଛି ତାକୁ ?

ବେଗ୍ସ—ସାହେବ ନିଜେ ମ୍ୟାଡାମ—

ମନୀଷା—ଏଥିରେ କେସ୍ ହୋଇ ପାରେ, ବେଗ୍ସରାମ ?—

ବେଗ୍ସ—Penal Code ରେ ସବୁ ପ୍ରକାର ବ୍ୟବସ୍ଥା ଅଛି,
ମ୍ୟାଡାମ ।

ମନୀଷା—ତେବେ ବେଗ୍ସରାମ, ତୁମେ ଉକିଲ ପରାମର୍ଶ କର—ମୁଁ
କେସ୍ କରିବି ।

ବେଗ୍ସ—କେଶ୍ କରିବେ, Madam ?

ମନୀଷା—କାହିଁକି—ତୁମେ ପାରିବ ନାହିଁ ?

ବେଗ୍ସ—ବେଗ୍ସରାମ ସବୁ ପାରେ, ମ୍ୟାଡାମ୍ ! ତେବେ, କେଶ୍‌ଟା
ହେବ ?

ମନୀଷା—ତୁମେ ପାରିବ କି ନାହିଁ ?
ବେଙ୍କ—ଶ୍ୟୁର୍ ପାରିବ ମ୍ୟାଡାମ୍ । ମୋର କମିସନ୍ ପାଇଲେ ହେଲା—
ମନୀଷା—ତେବେ ଅସ, ଟଙ୍କା ନେଇଯିବ—
[ ଉଭୟଙ୍କର ପ୍ରସ୍ଥାନ ]

---

## ଦ୍ୱିତୀୟ ଦୃଶ୍ୟ

[ ଗୃହ—ଫାଟକ ସମ୍ମୁଖ—ମିଃ ଦାସ ଓ ଛନ୍ଦା କଥାବାର୍ତ୍ତା କରୁ କରୁ ପ୍ରବେଶ କଲେ । ଦୁଇଜଣଙ୍କର ଟେନିସ୍ ଖେଳିବାର ପୋଷାକ ଓ ହାତରେ ବେକେଟ୍ ]

ମିଃ ଦାସ—ୱଣ୍ଡର୍ଫୁଲ୍, ଛନ୍ଦା ଦେବୀ ! ଅପଣଙ୍କ ଭଳି ଜଣେ ଖେଳାଳୀ, ଅଲମ୍ପିକ ପ୍ରତିଦ୍ୱନ୍ଦ୍ୱୀମାନଙ୍କ ମଧ୍ୟରେ ମଧ୍ୟ ଦୁର୍ଲଭ !
ଛନ୍ଦା—ସ୍ୱଲଭ ଏଇ ସାଜ-ପୋଷାକ ଅଉ ଟେନିସ-ରେକେଟ୍‌ର ଗୁଣ; ଏ' କଥା ଭୁଲି ଯିବେ ନା, ମିଃ ଦାସ୍ !
ମିଃ ଦାସ—ହଁ, ହଁ, ଆପଣଙ୍କ ଜନ୍ମଦିନ ଉପଲକ୍ଷେ, ମୋର ଏଇ ସାମାନ୍ୟ ଉପହାର,—ତାକୁ ଏତେଟା ସମ୍ମାନ ଦେଇ ଲଜ୍ଜା ଦେବେ, ମୁଁ ସ୍ୱପ୍ନରେ ମଧ୍ୟ ଭାବି ନ ଥିଲି, ମିସ୍ ଛନ୍ଦା ଦେବୀ—!
ଛନ୍ଦା—ହେଲେ—( ଦୀର୍ଘ ଶ୍ୱାସ ଛାଡ଼ି ) ସେହି ଜନ୍ମ ଦିନ ଉପଲକ୍ଷେ ମନୀଷା ଯେ ମୋତେ ଏତେଟା ଅପମାନ ଦେବ, ମୁଁ ମଧ୍ୟ ସ୍ୱପ୍ନରେ ଅଦୌ ଭାବି ନ ଥିଲି, ମିଃ ଦାସ !
ମିଃ ଦାସ—ମୁଁ ତ କହୁଛି—ଏବାଦିନରେ ପଢ଼ିଥିଲି ସେଇ ମାତାଲ୍-ବଧୂର ନୂଆ ଅଫିସ୍-ଘର-ପ୍ରତିଷ୍ଠା ଉତ୍ସବର

ନାୟକ—ଆଜ ଆପଙ୍କର ଜନ୍ମଦିନ ଉତ୍ସବ । ଆପଙ୍କର ବାନ୍ଧବୀ ସେହି ନାମକଣ୍ଠିକୁ ବେଶୀ ମୂଲ୍ୟବାନ୍ ମନେ କରିଥିଲେ ।

ଛନ୍ଦା—ଯିଏ କେଉଁ ବାନ୍ଧବୀ ଉପହାରସ୍ତୁ କହିବ, କହନ୍ତୁ ତ । ଏ'ଟର ବି ଲିକ୍ ପାଉଥାନ୍ତା ମନୀଷା—ଅଟେଣଙ୍କୁ ଅପଣଙ୍କ ବନ୍ଧୁ ପାଖକୁ ପଠାଇ, ସେ ଅସିଥାନ୍ତା ତା ବନ୍ଧୁ ପାଖକୁ ।

ମିଃ ଦାସ—ମୁଁ ଠିକ୍ ସେଇ ପ୍ରସ୍ତାବ କରିଥିଲି ।

ଛନ୍ଦା—ତେବେ ?

ମିଃ ଦାସ—ଯାର ଉତ୍ତରରେ ଆପଣଙ୍କର ବାନ୍ଧବୀ କହିଥିଲେ, "ଛନ୍ଦା ମୋର ବନ୍ଧୁ, ଅଜ ମିଃ ଚାଟ୍ ପଟି ତୁମର ବନ୍ଧୁ—ଏକା ଦିନ ଓ ସମୟରେ ନାମକଣ୍ଠି ରକ୍ଷା କରିବାକୁ ପଡ଼ିବ ଯେତେବେଳେ, ଓଲଟା ଓଲଟି ଭାବରେ ରକ୍ଷା କରିବା ଉଚିତ । ସେଥିରେ ସୌଜନ୍ୟ ଅଧିକ ପ୍ରକାଶ ପାଇବ—ଅଉ ଉପସ୍ଥିତର ବନ୍ଧୁର ମାନ ବଢ଼ିବ ବେଶୀ ।

ଛନ୍ଦା—ଅଭିଜାତ୍ୟ ହିସାବରେ ଖାଣ୍ଟି କଥା, ସନ୍ଦେହ ନାହିଁ—ତେବେ, ଯେଉଁ ମାତାଲକୁ ବନ୍ଧୁ ବୋଲି ସ୍ୱୀକାର କରିବାକୁ ଆପଣ ଘୃଣା ବୋଧ କରନ୍ତି, ତା'ର ମାନ ରଖିବା ନୁହେଁ, ବଢ଼ାଇବା ପାଇଁ ନିଜେ ଧାଇଁଥିବା କେତେ ଦୂର ଠିକ୍, ତା' ବିବେଚନା କରିବା ମନୀଷାର ଉଚିତ ଥିଲା ।

ମିଃ ଦାସ—ସେଇ କଥାତ—

ଛନ୍ଦା—ମୁଁ କ୍ଷେତ୍ରି ପାରୁନି, ମିଃ ଦାସ ! କେଉଁ ଯୋଗରେ ପଡ଼ି ଏ ଭଳି ଗୋଟାଏ ଅସଭ୍ୟ ଜାନୁଆରକୁ ମନୀଷା ପରି ଜଣେ ଶିକ୍ଷିତା, ଅଧୁନିକା ନାରୀ ପ୍ରଶ୍ରୟ ଦେଉଛି ।

ମିଃ ଦାସ—ଗ୍ରଣ୍ଡୟ ବୋଲ୍ ପ୍ରଣୟ !—ଅପଣ ତ ଜାଣନ୍ତି, ସେହି
ଦାଲଟା ମାତ୍ର ୨୫ ହଜାର ଟଙ୍କାର ଗଚ୍ଚିତ୍ତ ପଳିସି ବା
ବୀମାପତ୍ର ପାଇଁ ପ୍ରସ୍ତାବ କରିଥିଲା ବା ଦାବୀ ଜଣାଇ
ଥିଲା ।

ଛନ୍ଦା—ହିଁ, ତା' ଜାଣେ ।

ମିଃ ଦାସ—ସେଇ ସ୍ଥଳେ, ଅପଣଙ୍କର ବାଜିବା କରି ବସିଲେ
ପଚିଶ ହଜାର ଟଙ୍କାର ପଲିସି ।

ଛନ୍ଦା—Why not lakh ? ହଁ, ସେହି ମୋଟା ପଲିସିର ମୋଟା
ପ୍ରିମିୟମ ଦେବାକୁ ପଡ଼ୁଥିବ ଅପଣଙ୍କୁ ?

ମିଃ ଦାସ—ଏ କଥା ଆଉ ପଚାରିବାକୁ—

ଛନ୍ଦା—ମୋ ସଙ୍ଗେ ଥରେ ଯଦି ଦେଖାହୁଅନ୍ତା—

ମିଃ ଦାସ—ଦେଖା ନ ହେବାହିଁ ଭଲ ।

ଛନ୍ଦା—ଅଚ୍ଛା, ମୁଁ ଶୁଣିଛି – ସେହି ଦାଲଟା ବିବାହ ଦିନ ଯେଉଁ
ହାରଟା ଉପହାର ଦେଇଥିଲା, ତା'କୁ କଣ୍ଠରେ ସଦା-
ବେଳେ ନାଇଥାଏ, ମନୀଷା—ଅପଣଙ୍କ ଧର୍ମପତ୍ନୀ ।

ମିଃ ଦାସ—ଧର୍ମ ? ( ହସିଲେ )

ଛନ୍ଦା—ତେବେ ହାରଟା ଦାମିକା, ଏଥିରେ ସନ୍ଦେହ ନାହିଁ । ମୋତେ
କ୍ଷମା କରିବେ, ମୁଁ ଭାରି ଅନ୍ୟାୟ କରିଛି—ଘରକଥା
ପଦାରେ ପକାଇ, ଅପଣଙ୍କ ମନରେ କଷ୍ଟ ଦେଇଛି ।

ମିଃ ଦାସ—ହେଲେ, ଅପଣ ଏକମାତ୍ର ଏ' ସଂସାରରେ ମୋ'ର
ଦରଦୀ ବନ୍ଧୁ—ମୋତେ ଜାଅଁଳି ରଖିଛନ୍ତି, ଛନ୍ଦା ଦେବୀ ।

ଛନ୍ଦା—(ହସ୍ତ ଓ୍ୱାଚ ଦେଖି) ରେଜଓ ଏଲ୍ଭେନ ଥିବ—ଟାଇମ୍ ହୋଇ
ଗଲାଣି । ( ଛନ୍ଦାସ୍ୱ ଯେନ ଚାଲିଲେ )

ମଃ ଦାସ— [ ଯାଉ ଯାଉ କାହାକୁ ଦେଖି ରେକେଟ୍‌ରେ
ମୁହିଁ ଘୋଡ଼ାଇ ଉରବର ହୋଇ ବାପଗ୍ରାଉ ଦଟକୁ
ଚଳାଇଲେ ]
ଖାଁ ସାହେବ—( ପ୍ରବେଶ ପୂର୍ବକ ) ଏ ବାବୁସ୍ତର ସା'ବ—ହୋ
ବାବୁଷ୍ଟାର ସା'ବ—ରୁପି ଦେ ଯା'ନା—ରୁଚି—ରୁପି —
[ କହୁ ଗୋଡ଼ାଇ ଯାଉଥିଲେ, ଏହୁ ସମୟରେ ଚଟ୍‌ପଟି
ପଟ୍ଟପଟ୍ଟ ପ୍ରବେଶ କରି ଡାକିଲେ ]
ଚଟ୍‌ପଟି—ଓ ଖାଁ । ସାହେବ ।
ଖାଁ । ସାହେବ—ଚଟ୍‌ପଟି ସାହେବ ! ସେଲମ—ସେଲାମ୍,
ହୁଜୁର । ଶୀକାର ଗ୍ରତା—
ଚଟପଟି—ଅରେ, ଶୁନୋଜୀ—ଶୀକାର କୋନ୍ ?
ଖାଁ । ସାହେବ—ଓଇ ବାବୁସ୍ତର ସା'ବ—ହୁଜୁର । କ୍ୟା ଉସ୍‌କା
ନାମ ? ଡାସ—ଡାସ— ।
ଚଟପଟି—ସମ୍‌ଝା—କେତନା ଲିଅ ?
ଖାଁ ସାହେବ—ଦୋ ହଜାର ।
ଚଟପଟି—କିସ୍ ବାସ୍ତେ ?
ଖାଁ ସାହେବ—ହାମ୍‌କୋ ବୋଲଥା—ସାଧିକା ବାସ୍ତେ ।
ଚଟପଟି—ସାଧିତୋ ହୋ-ଚୁକା—
ଖାଁ ସାହେବ—ଓ ବା'ତ୍ ମାଲୁମ—ମଗର ବିବିକୋ କିଅ ଏକଠୋ
ମୋତିକା ହାର ଦେଙ୍ଗେ, ଉସି ବାସ୍ତେ—
ଚଟପଟି – ଦିଅ ହାର ?
ଖାଁ । ସାହେବ – ମୋଲ୍‌କେ ଦିଅ ହୁଜୁର—ବା'ତ ସଚ୍ଚା—ହାମକୋ
ଏକ ରୋଜ ଛୁପାକେ ଦେଖା ଲଇସ୍ତା—ଓନକେ ବିବି
ହରବଖତ୍ ଓ ହାର ପିନତେ ହେଁ —ବହୁତ ଭଦା – କିମତ୍
ଗୁରହଜାର ସେ କମି ନେହି ହୋଗୀ—

ଚଟପଟ - ଔର ଟବ୍ ଶେଠିଆ ତୁମ୍‌କୁ କେଇ ମିଳେଗା ?

ଖାଁ। ସାହେବ—ତବ୍ ଏକ ହାର ବେଚକେ ଦେଙ୍ଗେ, ହାମକୁ ବୋଲ୍—।

ଚଟପଟି—ଜବାବ ଦିଅ—ବେଚକେ—? (ଏକାନ୍ତ) ମୋ'ର ଦିଅ ହାର। (ପ୍ରକାଶ୍ୟେ) ଅଚ୍ଛା ତୁମ୍ ଡେଷ୍-ପର୍ ରହୋ—ଦୋ' ବକେ ହାମ୍ ଖୋଦ ମିଳେଙ୍ଗେ—ସୁଧ କେତନା ହୁଅ ?

ଖାଁ। ସାହେବ—ପନ୍ଦର ଶହ ରୁପିଅ—।

ଚଟପଟି—କେତ୍‌ନା ମଇନାକା ସୁଧ ?

ଖାଁ। ସାହେବ—ଛେ ମଇନାକା, ସାର୍।

ଚଟପଟି—ତବ୍ ସବ ମିଲ୍‌କେ, ସାଢ଼େ ତିନ ହଜାର ହୁଅ—

ଖାଁ। ସାହେବ—ନେହିଁ ଜୀ—ଟ୨୦୦୦ ହଜାର ଅସୁଲ ଗିୟା—୫୦୦ (ପାଞ୍ଚଶହ) ୫୦୦ (ପାଞ୍ଚଶହ) କର୍‌କେ।

ଚଟପଟି—୫୦୦, ୫୦୦ କର ୧୦୦୦ ଅସୁଲ୍—ଅଚ୍ଛା, ଖାତା ଠିକ୍ ରଖୋ—ହାମ ଯାତେ ହେଁ—

ଖାଁ। ସାହେବ—ବାରଷ୍ଟର ସା'ବ—ଆପକା ଦୋସ୍ତ, ଜାନ୍‌ତା ହାମ୍।

ଚଟପଟି—ଜ୍ୟାଦା ମତ୍ ବୋଲ୍ନେ।

[ ଖାଁ। ସାହେବ ଚାଲିଗଲେ ]

ଚଟପଟି—ମନୀଷା ସଙ୍ଗେ ଦେଖା ହେବା ପୂର୍ବରୁ—ବନ୍ଧୁ ସଙ୍ଗେ ଥରେ ଦେଖା ହେବା ଦରକାର—(ପକେଟ ଦାବଣ୍ଡି) ହେଲେ, ଅସଲ ଜିନିଷ ଭୂଲିଚି—

[ ଏତିକି ବେଳେ ଜଣେ ଭିକ୍ଷୁକ ଗୀତ ଗାଇ ଗାଇ ଚାଲି ଗଲା ପଚଟପଟିଙ୍କୁ ଲକ୍ଷ୍ୟ କର ]



## ତୃତୀୟ ଦୃଶ୍ୟ

[ ଅଫିସ ଘର । ବେଗୁସ୍ୱାମ କାବାସ୍ଥ ମନରେ ଟାଇପ୍ କରୁଥିଲେ । ମିଃ ଦାସ ପ୍ରବେଶ କଲେ—ରେଡକେନ୍ ଥୋଇ ଦେଲେ ଟାଇପ ସଂକ୍ରାନ୍ତ କଥା ବାଡ଼ି ହେଇ ହେଇ ବସିଲେ—ବେଗୁସ୍ୱାମ କଥା କହୁଥିବା ବେଳେ କାମ କଦାପି ବନ୍ଦ କରୁ ନ ଥିଲେ ]

ମିଃ ଦାସ—ଖୁବ୍ ଖଟା ଖଟ୍ ଚଳାଉଛନ୍ତି—ଖବର କ'ଣ ?

ବେଗୁ—ଗୁଡ୍, ସ୍ୟାର !

ମିଃ ଦାସ—( ଫାଇଲ ଦେଖି ଦେଖି ) ·ଏଁ. ଅର୍ଜେଣ୍ଟ—କାହିଁ ? ଅର୍ଜିଟା କାହିଁ ? ଅଣାଇ ଦେବେ—

ବେଗୁ—ଦେଉଛି, ସ୍ୟାର୍—ଟାଇପ୍ ପ୍ରାୟ ଶେଷ ହୋଇ ଗଲାଣି— ଆପଣ ଇତ ମଧ୍ୟରେ ଫି ଟଙ୍କାଟା ଗଣି ନିଅନ୍ତୁ—

ମିଃ ଦାସ—ତୁମେ ଗଣିଛ ତ ?

ବେଗୁ—ହଁଆପି, ସ୍ୟାର—

ମିଃ ଦାସ— ( ଗଣି ଦେଖିଲେ ) ପଚସ୍ତରୀ ଟଙ୍କା ବାରଅଣା— ଏଁଡ, ବେଗୁସ୍ୱାମ ?

ବେଗୁ—ଆପଣଙ୍କର ବାରିଷ୍ଟର ଫି ୧୦୧ ଟଙ୍କା, ସେଥିରୁ ବେଗୁସ୍ୱାମର ଦଲାଲି-କମିଶନ-ବାଦ ଦେଇ ଦେଖନ୍ତୁ, ଠିକ୍ ହେଲା କି ନା ସ୍ୟାର୍—

ମିଃ ଦାସ—କମିଶନ—ଶତକଡ଼ା ପଚିଶ୍ ହାରରେ ତ ?

ବେଗୁ—ସ୍ୟାର—

ମିଃ ଦାସ—ଠିକ୍, ପଚିଶ ହାରରେ, ୧୦୦ ଟଙ୍କାରୁ ବାଦ ଗଲା— ୨୫—ତା'ପର, ୧ ଟଙ୍କାରୁ ପାଞ୍ଚ ଅଣା—

ବେଚା—ପାଞ୍ଚ-ଅଣା ନୁହେଁ, ସ୍ୟାର । ଚାରି ଅଣା—

ମିଃ ଦାସ—ବେଶୀ ବକ୍ ବକ୍ କରନା—ଏହି ନିଅ ଅଣାଏ

ଫେରିବ—ଜାଣ, ମୁଁ ବିଃ ଏଃ ରେ 'ଅଙ୍କ' ନେଇ ଥିଲି ?

ନିଅ, ଟର ।

ବେଗ୍ରୁ—ସେଇଟି ଥାଉ, ସ୍ୟାର—ଡ୍'ାକୁ ଟେଲିଗ୍ରାଫ୍ କରି ଦେବ ।

ମିଃ ଦାସ—ଆଶ୍ଚର୍ଯ୍ୟ କଥା—ବେଗ୍ରୁରାମ ଅଳ୍ପ ଟେଲିଗ୍ରାଫ୍ କରିବ ?

ବେଗ୍ରୁ—ବେଗ୍ରୁରାମ କାହାରିକୁ ଫାଳରୁ ଧରେ ନାହିଁ, ସ୍ୟାର । କ

କାହାର ପୁଁ ଫାଳ୍ରୁ ନିଏ ନାହିଁ ।

ମିଃ ଦାସ—ମୁଁ ବି ଫାଳରୁ କଥା କହି ଜାଣେ ନା—ଝାଇପ ସରିଲା ?

ପରେ ଶେଷ କରିବ—ମୋତେ ବାଧ୍ୟ କରେ ବାହାର

ବାସ୍ତବିକ କହ ଦେଅ—ଅନ୍ୟ ଏନ୍‌ଗେଜ୍‌ମେଣ୍ଟ

( Engagement ) ଅଛି ତ ?

ବେଗ୍ରୁ—ଜଣେ ଭଦ୍ର ମହିଳା ର ସ୍ୱାମୀ ୫୦ ହଜାର ଟଙ୍କାର ଗୋଟାଏ

ବୀମା କରନ୍ତି—

ମିଃ ଦାସ—ସେଇ ଓ୍ୟାମ ବିବାହ-ପତ୍ର- ନିବାରଣୀ—ଅର୍ଥାତ୍

ମ୍ୟାରେଜ୍-ଏଣ୍ଟିଡୋଟ୍ କୋମ୍ପାନୀରେ ତ ?

ବେଗ୍ରୁ—ସ୍ୟାର—

ମିଃ ଦାସ—ତା' ପର ?

ବେଗ୍ରୁ—ସେଇ ବୀମା ଟଙ୍କାର ତିନିମାସିଆ ଗୁଡା—

ମିଃ ଦାସ—ଜେତେ ? ୫୦୦ ( ପାଞ୍ଚଶହ ଟଙ୍କା ) ତ ?

ବେଗ୍ରୁ—ଏକ୍‌ଜାକ୍‌ଟଲି, ସ୍ୟାର୍ (·Exactly, Sir )!

ମିଃ ଦାସ—ତା' ପରେ— —

ବେଗ୍ରୁ—ସ୍ୱାମୀଙ୍କର ରୋଜଗାର ସେପରି ନ ଥିବାରୁ— ସ୍ତ୍ରୀ

ସେଇ ଗୁଡାଟଙ୍କା ଦେଉ ଥିଲେ— ଢ଼ୁଇ କିସ୍ତିର ଟଙ୍କା

ସ୍ୱାମୀଙ୍କ ମାରଫତ୍ ଦିଅ ହୋଇଥିଲା, ଅଫିସରେ ଜମା ଦେବା ନିମନ୍ତେ— ଅଜ୍ ସେଇ ଟଙ୍କା— ତୋଫ୍‌ରଫ୍ କରିଛନ୍ତି, ତାଙ୍କର ସ୍ୱାମୀ— ଏ ଭାଲ୍‌ଗର୍‌ଟ୍ ଚିଟିଂ କେସ୍ ( A down—right Cheating case)— ପୁରାପୁରି ଦଗାବାଜି—

ମିଃ ଦାସ—ଅଚ୍ଛା, ସେଇ ଧପାବାଜ ଇନ୍‌ସୁରେନ୍ସ ମାତାଲ୍‌ଟାକୁ କୌଣସି ମତେ ଏଇ କେସ୍‌ରେ ଯୋଡ଼ି ଦିଅ ଯାଇ ପାରେ ନା ?—

ବେଗ୍—ୟେସ୍ ଅଜ୍ ବେଶୀ କଥା କ'ଣ, ସ୍ୟାର ?

ମିଃ ଦାସ—କେମିତି ?—

ବେଗ୍—ମାତାଲଟା ଥିଲା - ସ୍ୱାମୀର ବାଲ୍ୟବନ୍ଧୁ—ଅଜ୍ ପ୍ରେମ-କାର-ବାରର ପ୍ରଧାନ ଚକ୍ରାନ୍ତୀ—ଏଇ ହିସାବରେ ସ୍ୟାର୍—

ମିଃ ଦାସ—ଦି ଅଇଡ଼ିଆ ( The Idea )—ଦିଅ ତ, ଅଙ୍ଗୁଠି—।

ବେଗ୍—[ ବଢ଼ାଇ ଦେଲେ ଅଙ୍ଗୁଠି। ]

ମିଃ ଦାସ—ବାଦୀ— —ଶ୍ରୀମତୀ ମନୀଷା ଦେବୀ—ୱେଫ୍ ମିସେସ୍ —ଦାସ—ଅଜ୍ ପ୍ରତିବାଦୀ—

ବେଗ୍—[ ଅଙ୍ଗିରେ ଦେଖାଇ ] ଅଜ୍ ପ୍ରତିବାଦୀ—ମିଃ ଅର୍ ଦାସ।

ମିଃ ଦାସ—ବେଗ୍‌ସାମ !—[ ଅଙ୍ଗୁଠି ବେଚାରାମ ଉପରକୁ ନିକ୍ଷେପ କଲେ ]

ବେଗ୍—[ ମଥାରେ ଲଗାଇ ସେଇ ଅଙ୍ଗୁଠି ] ଲକ୍ଷ୍ମୀ, ସ୍ୟାର୍— ବଢ଼ାବାର କରିବେ ନି।

ମିଃ ଦାସ—ସ୍କାଉଣ୍ଡ୍ରେଲ୍—ବଦମାସ— —ମୋ'ର ଠେଙ୍ଗା, ମୋର ମୁଣ୍ଡରେ— —।

ବେଗୃ—ହେଲ୍‌ପଲେସ୍ ସ୍ୟାର୍ ଚେଞ୍ଜରଣଙ୍କ ହେଲପ୍ ଲେଣ୍ !
ମିଃ ଦାସ—ବୁଝିଛି—ଏ' ନାଲିଶର ପରାମର୍ଶ ଦେଇଛ ତୁମେ—
ବେଗୃ—ବିନା ନାଲିଶରେ ଟଙ୍କା ଅଦାୟ ହେବ—ଏମିତି ଉପାୟ
ନାହିଁ ବୋଲି, ସ୍ୟାର—।
ମିଃ ଦାସ—ଟଙ୍କା ମୁଁ ନେଇଛି, ତାର ପ୍ରମାଣ ?—
ବେଚା—ମୋର ନୋଟ୍‌ବୁକ୍, ସ୍ୟାର୍ ।
ମିଃ ଦାସ—କାହିଁ—ଦେଖେଁ ?
ବେଗୃ—ଯଥା ସ୍ଥାନରେ, ଯଥା ସମୟରେ, ଦେଖି ପାରିବେ—
ସ୍ୟାର—
ମିଃ ଦାସ—ନିମକ୍ ହାରାମ୍—
ବେଚାରାମ—ତେବେ ମୁଁ ଚାଲିଲି, ସ୍ୟାର୍—
ମିଃ ଦାସ—ଠିଆ ହୁଅ ।
ବେଚାରାମ—ଡେରି ହେଉଛି, ସ୍ୟାର୍ ।
ମିଃ ଦାସ—ଅନ୍ୟ ବାରିଷ୍ଟର ଦେଖିବ ପରା ?
ବେଚାରାମ—ମହାକାଳର ନିମକ୍ ଖାଇଛି ସ୍ୟାର୍—ନିମକ-ହାରାମି
ତ କରି ପାରେ ନା, ସ୍ୟାର୍ ।
ମିଃ ଦାସ—( ନିକଟକୁ ଯାଇ ) ଓ ବୁଝିଛି, ମୋର ବିରୁଦ୍ଧରେ
ମକଦ୍ଦମା,—ମତେଇ ଦେଇଛ ବାରିଷ୍ଟର । ତା'ର ଅର୍ଥ,
ଉଭୟ ପକ୍ଷର ନିମକ ବଜାଏ ରଖିବ—ଅଜ ବଜାଏ ରଖିବ
ମକ୍କେଲର ମାନ, ମହତ୍—
ବେଗୃ—ଭୁଲ, ସ୍ୟାର୍—ସବୁର ଉପରେ କେମିତି ବଜାୟ ରହିବ,
ବେଗୃରାମର ଦଲାଲ କମିସନଟା;—ସେଥିପାଇଁ ସିନା
ଲେଡ଼ା—ବାରିଷ୍ଟରଙ୍କର ବାଟ୍ଲୋର, ଅଜ କମିଶନଜୀବୀ
ଗରିବ ମୋହରିର ଲାଇସେନ୍‌ସଟା—

ମିଃ ଦାସ—ତା' ହେଲେ ଅଜଟ୍ଟି ବାହ୍ୟସ୍ଥର-ମୋହରରଙ୍କ
ମୋହରର ବଜାୟ ରହିବା ଅସମ୍ଭବ !

[ ଚଟ୍ଟପଟ୍ଟୀ ସାହେବ ଟିକ୍ ସେତିକିବେଳେ ହସି ହସି ପ୍ରବେଶ କଲେ ]

ଚଟ୍ଟପଟି—ହଁ ହୁଁ—ତା' ନ ହେଲେ ଯେ, ଏ ଯେଉଁ ମାମଲାଟି ଚାଲିଛି, ତା ସୁଚ୍ଛୁଣ୍ଟୁରେ ଫଏସଲା ହୋଇ ଯିବା କିପରି ସମ୍ଭବ ?

ମିଃ ଦାସ—କିଏ ?

ଚଟ୍ଟପଟି— ମିଃ ବାର-ଏଟ୍-ଲ'ଙ୍କ-ବଟୁ—ମିଃ ବାର-ନୋ-ଲ, ମିଃ ଦାସ !

[ ବେଖ୍ରସମ ନମସ୍କାର କରି ଗୁଳି ଗଲେ ]

ମିଃ ଦାସ—ଗେଟ୍ ଆଉଟ୍, ସ୍କାଉଣ୍ଡ୍ରେଲ୍—ତୁମ୍ଭେ ତ—

ଚଟ୍ଟପଟି—କ'ଣ, ଟ୍ରେସ୍ ପାସ ବା ଅନଧିକାର ପ୍ରବେଶର ଚାର୍ଜ ଆଣି କେସ ଦାଏର କରିଦେବ ?

ମିଃ ଦାସ—ଖାଲି ସେତିକି ନୁହେଁ—ମାନହାନି ମକଦ୍ଦମା—

ଚଟ୍ଟପଟି—ଓଃ ! ଜଣେ ମାନ-ମର୍ଯ୍ୟାଦା-ସମ୍ପନ୍ନ ବାରିଷ୍ଟରଙ୍କ ବିରୁଦ୍ଧରେ ମିଥ୍ୟା ନାଲିଶରେ ପ୍ରରୋଚନା ଦେଇଛି ତାଙ୍କର ସହଧର୍ମିଣୀଙ୍କୁ—ଏଇ ଅଭିଯୋଗରେ ତ ?

ମିଃ ଦାସ—ହଁ, ପ୍ରରୋଚନା ଦେଇଛି, ଜଣେ ମାନ ମର୍ଯ୍ୟାଦା-ହୀନ ଇତର ଦାଲାଲ—ଗୁରୁତ୍ୱ ବୁଝୁଛ ତ ?

ଚଟ୍ଟପଟି—ହେଲେ, ପାଉଣାଦାର ଇତର ହେଉ ବା ଭଦ୍ର ହେଉ, ତା'ର ପାଉଣା ଟଙ୍କାର ଗୋଟାଏ ଗୁରୁତ୍ୱ ଅଛି—ଏ କଥା ଅସ୍ୱୀକାର କରି ପାରିବେ ନ, ବାରିଷ୍ଟର ସାହେବ—

ମିଃ ଦାସ—କି ପାଉଣା ତୁମର ?

ଚନ୍ଦ୍ରପତି—ଦୁଇ କସ୍ତି ସାମାର-ଚାନ୍ଦା ଚାଳଣା—ଏକ ହଜାର ଟଙ୍କା ମଜୀଷା ଦେବା ଦେଇଛନ୍ତି, ଆଉ ମିଃ ଦାସ ନେଇଛନ୍ତି—

ମିଃ ଦାସ—ପ୍ରମାଣ ?

ଚନ୍ଦ୍ରପତି—ରେକର୍ଡ଼ମାନର ତାଏଦା, ହସ୍ତଗତ କରିବାକୁ ବେଶୀ ସମୟ ଲାଗିବ ନାହିଁ ।

ମିଃ ଦାସ—ସେ'ଟା ଜାଲ ହେଲିନ—

ଚନ୍ଦ୍ରପତି—ହେଲେ, ତାଂ ସାହେବଙ୍କ ଖାତା ତ ଜାଲ ନୁହେଁ—?

ମିଃ ଦାସ—ମୁଁ ଧାରୁଛି—ତୋ'ର କଅଣ ?

ଚନ୍ଦ୍ରପତି—ପ୍ରାତ ଶୋଧକୁ ଅଦୂଳ ପଡ଼ୁଛି ୫୦୦, ୫୦୦ ଟଙ୍କା— ଦୁଇ କସ୍ତିରେ—ପାଇଲ କେଉଁଠୁ ?

ମିଃ ଦାସ—ଏ' ଯେ ସେଇ ପ୍ରିମିୟମ ଟଙ୍କା—ତା'ର ପ୍ରମାଣ ?

ଚନ୍ଦ୍ରପତି—ତା ଦିଆଯିବ ହାକମ ସାମ୍ନାରେ—କୋର୍ଟରେ । ହେଲେ, ବନ୍ଧୁ । ଅଙ୍କ ଯେତେବେଳେ ଦେଖା ପାଇଛୁ ତୋର, ସେତେବେଳେ ଗୋଟାଏ ପ୍ରଶ୍ନର ମୋର ଜବାବ୍ ଅଦାୟ ନ କରି ଛାଡ଼ୁ ନା—

ମିଃ ଦାସ—ଚାଲି ଯା' କହୁଛି ।

ଚନ୍ଦ୍ରପତି—ଧୀରେ ଭାଇ, ଧୀରେ—ତୁ ଆଗେ ବସ ତ । (ଜୋରେ ବସି ପଡ଼ାଇ) ଅଚ୍ଛା! କହ ତ, ଯେଉଁ ନାରୀ ରତ୍ନକୁ ନେଇ ତୁ ବିଶ୍ୱ ସଂସାର ଭୁଲିବାକୁ ଚେଷ୍ଟା କରିଥିଲୁ ଦିନେ, ତାଙ୍କୁ ଆଜି ହେଲାରେ ପାଇ, ତା' ପ୍ରତି ଏତେ ଅବହେଳା କାହିଁକି । ଏମିତି ସୁଖ ସମ୍ଭୋଗ ଭିତରେ ବୁଡ଼ି ରହି ସୁଖୀ ହୋଇ ପାରୁ ନୁ କାହିଁକି ?

ମିଃ ଦାସ—ତୋ'ର ପାଇଁ—ଖାଲି ତୋ'ର ପାଇଁ—

ଚନ୍ଦ୍ରପ୍ରଭା—ମୋ'ର ପାଇଁ ?—

ମିଃ ଦାସ—ହଁ ତୋ'ର ପାଇଁ—ବିଲାତରୁ ଯେତେବେଳେ ବାରିଷ୍ଟର ହୋଇ ଫେରିଲି, କେତେ ଆଶାର ଇନ୍ଦ୍ରଧନୁ ମନେ ମନେ ଅଙ୍କି ଥିଲି—ସବୁ ଲୁଅଭେ ଉଭେଇ ଗଲା—ମୁଁ ଘରେ ଗୋଡ଼ ଦେଉଣୁ ନ ଦେଉଣୁ, ଯେତେବେଳେ ମୋର ପିତାଙ୍କର ହେଲା ମୃତ୍ୟୁ, ଆଉ ମହାଜନ ଦେଣାରେ ସମସ୍ତ ସମ୍ପତ୍ତି ଉଠିଲା ନିଲାମରେ—

ଚନ୍ଦ୍ରପ୍ରଭା—ତା' ପର ?

ମିଃ ଦାସ—ଯେଉଁ ଅଭିଜାତ୍ୟ କୋଳରେ ମୁଁ ଜୀବନ ସାରା ବଢ଼ି ଅଛି, ସେ ବି ଆଉ ମୋ ଆଡ଼େ ଅନାଇଲା ନାହିଁ । ମୁଁ ଯେମିତି ଏକ ଘରଅଁ—ଏମିତି ବୋଧ କରିବାକୁ ଲଗିଲି । ତା' ବି ଦେହ-ସୁହା ହୋଇ ଯାଇ ଥାନ୍ତା; ମାତ୍ର ଯେଉଁ ଯୋଗ୍ୟତା ନେଇ ଫେରିଛି, ସେଥିରେ ଲୋଡ଼ା ଏକମା'ତ୍ର ଅଭିଜାତ୍ୟ ସମାଜ; ତେଣୁ ଜୀବନ-ତୁଫାନରେ ଏକମାତ୍ର ପୋତାଶ୍ରୟ ମଣିଲି, ମମୀଙ୍କ ସହ ବିବାହ—

ଚନ୍ଦ୍ରପ୍ରଭା—କେଣ୍, ତା' ତ ହେଲା—

ମିଃ ଦାସ—ବିବାହ ହେଲା ସତ, କିନ୍ତୁ ଆଶ୍ରୟ ପାଇଲି କେଉଁଠି ?

ଚନ୍ଦ୍ରପ୍ରଭା—ମାନେ ?

ମିଃ ଦାସ—ତୁଇ ତ ଟିଅ ହେଲୁ, ସ୍ୱାମୀ ସ୍ତ୍ରୀର ମିଳନ ବାଟରେ, ପାହାଡ଼ର ଦ୍ୱାଜା ଠେକ ?

ଚନ୍ଦ୍ରପ୍ରଭା—ମୁଁ ?—

ମିଃ ଦାସ—ହଁ—ହଁ—ତୁ । ଏବେ ଭାବ ଦେଖି—ଯେଉଁ ନିର୍ମଳ ବାଲ୍ୟ-ସ୍ମୃତିକୁ ମୂଳ-ଚ୍ଛେଦ କରି, ଏତେ ଦିନ ଗୋଟାଏ ତ୍ୟାଗମହିମାର ବଡ଼ାଇ କରି ଆସିଛି, ତାକୁଇ ଆଜ ମ୍ଳାନ କରି

ଦେଖୁଛ, ତୋ'ଠେ କେଉଁ ଲୁଗୁଛପା ଭୋଗ ବାସନାର ମୀତ ପ୍ରବୃତ୍ତି ଏ ନା—?

ଚଣ୍ଡପତି—ଦାସ—

ମିଃ ଦାସ—ଯେଉଁ ବଂଧୁ-ପ୍ରୀତିକୁ ମୂଳଦୁଆ କରି ବନ୍ଧୁର ଘର ତିଆ କରିବୁ ବୋଲି ଉଚ୍ଛନ୍ନ ହୋଇ ପୁଣି ଧାଇଁ ଆସିଛୁ ଏଠାକୁ—ତା'ର ଉଦାହରଣରେ ଲୁଟି ରହୁଛୁ ତୋ'ର ଘର ଭଙ୍ଗାର କେଉଁ ସ୍ଥାନ ଅଭିସନ୍ଧି କି ନା— ?

ଚଣ୍ଡପତି—ଦ—ସ୍ତୁ !!

ମିଃ ଦାସ—ନା ନା, ତୁ ମୋର ବଂଧୁ ନୋହୁ—ବଂଧୁ-ବେଶୀ ଶଇତାନ ।

ଚଣ୍ଡପତି—ହାଃ—ହାଃ—ହାଃ—ବଂଧୁ-ବେଶୀ ଶଇତାନ ହେଲେ ବଂଧୁ-ଦ୍ରୋହୀ (ମଦ ବୋତଲ ବାହାରକରି) ନୁହେଁରେ, ବଂଧୁ-ଦ୍ରୋହୀ ନୁହେଁ—ଏଇ ନେ ଦୁଇଖଣ୍ଡ ରସିଦ !— ବଂଧୁ-ବେଶୀ ଶଇତାନ, ଶଇତାନ— [ ଯେପରିକି ତାର ଶେଷ ସମ୍ବଳ ଦେଇ ଦେଲା ] ହାଃ—ହାଃ—ହାଃ—

(ପ୍ରସ୍ଥାନ)

ମିଃ ଦାସ—( ରସିଦ୍‌କୁ ଦେଖି ) ଏଁ ! [ ବ୍ୟାକୁଳ ଭାବରେ ଗୁଣ୍ଡିଲେ ଥରେ ଚଣ୍ଡପତିର ଗମନ ପଥକୁ—ତା' ପର ମୁଖର ଭାବ ବଦଳାଇ ହସି ଉଠିଲେ ଓ ରସିଦ ଦୁଇଖଣ୍ଡ ବଣ୍ଟି ଦେଲେ ପକେଟ୍‌ରେ—ସେତିକି ବେଳେ ମନୀଷା ଦେବୀ ଆସିଲେ ଉପରୁ-- ]

ମନୀଷା—ମିଃ ଚଣ୍ଡପତିଙ୍କର ଗଳା ଶୁଣିଲି—କାହାନ୍ତି ଚଣ୍ଡପତି ସାହେବ ?

ମିଃ ଦାସ—( ଗମ୍ଭୀର ସ୍ୱରରେ ନିକଟକୁ ଯାଇ ) ଗୋଟାଏ
ମାତାଲର ମଦ ବୋତଲ ଭଲ ଦେବ ବୋଲି, ଗୋଟାଏ
ଯୁଗର ବ୍ୟବଧାନ ପରେ ଆଜ ଦୋ:ତାଲାରୁ ଓହ୍ଲାଇ
ଆସିଲି ଏକତାଲାକୁ—ଧର୍ମ୍ମ ପତ୍ନୀ ମୋର—।

ମନୀଷା—ଧର୍ମ ପତ୍ନୀ। ( ହସି ) ଏହି ଧର୍ମପତ୍ନୀ ଆଖ୍ୟା ଦେଇ-
ବିବାହ ଧର୍ମର ଦୋହି ପକାଇ—ଧର୍ମଛଡ଼ା ପତି ମହାଶୟ
ଯାବତୀୟ ଅତ୍ୟାଚାର, ଅନାଚାର କରି ଯାଉଥିବେ—
ଧର୍ମପତ୍ନୀ ଉପରେ, ଆଉ ଧର୍ମପତ୍ନୀ ନୀରବରେ ତାହା ସହ୍ୟ
କରୁଥିବେ—ଧର୍ମକୁ ଜାମୁଡ଼ି ରହି ? ସେ ସତୀ ଆଦର୍ଶର
ଯୁଗ ଆଜ ନାହିଁ, ମିଃ ଦାସ। ଏ ସତ୍ୟ, ବାସ୍ତବର ଯୁଗ—
ବିବାହ ଧର୍ମ ରହିଥାଏ ପତିପତ୍ନୀ ମଧ୍ୟେ ପରସ୍ପରର ଯଥାର୍ଥ
ଆଦାନ ପ୍ରଦାନରେ—ଅର୍ଥହୀନ ଗୋଟାଏ ମନ୍ତ-ପଢ଼ା ବା
ଲେଖା ପଢ଼ା ଗଣ୍ଠି ଭିତରେ ନୁହେଁ।

ମିଃଦାସ—Bravo (ବ୍ରେଭୋ)! ଚମତ୍କାର।---ତା'ପର, ତା'ପର ?

ମନୀଷା—ପରିହାସ ? ତେବେ ସ୍ପଷ୍ଟକଥା ଶୁଣ, ମିଃ ଦାସ—ଯେଉଁ
ସମାଜ ଧର୍ମ୍ମର ଦୃଷ୍ଟିରେ ମୁଁ ଆଜ ତୁମ୍ଭର ସ୍ତ୍ରୀ, ସେହି ସମାଜ
ଧର୍ମ୍ମ ରକ୍ଷା ପାଇଁ "ଗ୍ରେଭ", "ଜୁଅଚୋର" ଯେଉଁ ସ୍ୱାମୀ,
ତାକୁ ମୁଁ କଦାପି କ୍ଷମା କରିବି ନାହିଁ—ଏହାହିଁ ମୋର
ଦୃଢ଼ ସଂକଳ୍ପ—ଫାର୍ମ ଡିଟେରମିନେସନ୍ ( Firm
determination )

ମିଃ ଦାସ—( ବ୍ୟଙ୍ଗପୂର୍ବକ ) [Congratulation] କନ୍‌ଗ୍ରାଚୁ-
ଲେସନ୍। ବାରିଷ୍ଟର-ପତ୍ନୀର ଉପଯୁକ୍ତ ବାଣୀ ! ଅନ୍ତ
ବାରିଷ୍ଟର-ପତି—ସେହି ବାଣୀ ସାଫଲ୍ୟ ମଣ୍ଡିତ ହେଉ—
ଏହା ଅବଶ୍ୟ କାମନା କରିବ; କେବଳ କଥାରେ

ନୃପେନ୍ଦ୍ର—ଢାର୍ଟୀରେ ମଧ୍ୟ । [ ରସିଦ ବୁକଟେଣ୍ଡ ସମ୍ମୁଖରେ ଥୋଇ ଦେଲେ ]

ମନୀଷା—ଏଁ—ପ୍ରିମିୟୁମ୍ ରସିଦ ! ବୁକ୍ ଖଣ୍ଡ—୫୦୦, ୫୦୦ ଟଙ୍କାର—

ମିଃ ଦାସ—ପ୍ରିମିୟୁମ ନେବାର ଅଲଗା ଅଲଗା ଛାଉଣି ମନେ ଥିବ—ମେଳାଇ ଦେଖି ନିଅନ୍ତୁ, ମନୀଷା ଦେବୀ ।

ମନୀଷା—[ ଏବେ ଲଜ୍ଜା ସରମ—ଦ୍ୱିତୀୟରେ ବଦ୍‌ଦୁବାଣ ସହୁ ପାରିଲେ ନାହିଁ; ଛଟିଛଟି ହୋଇ ପଳାଇଗଲେ ] ଓ ଦ୍ୟାଟ୍ ଲାୟାର "That Liar" ।

ମିଃ ଦାସ—ହାଃ—ହାଃ—ହାଃ—[ ସିଗାରେଟ୍ ଲଗାଇଲେ ]

---

## ଚତୁର୍ଥ ଦୃଶ୍ୟ

[ ଚୌଧୁରୀଙ୍କ ଘର ସାମନା— ]

ଖାଁ ସାହେବ—ଖାଦ୍—ହୁଜୁର୍ ।

ଚୌଧୁରୀ—ଖାଁ ସାହେବ । କଅ ବାତ୍ ? ହାମ୍‌ତୋ ତୁମସେ କୁଛ୍ କରଜା ଉରଜା ନେହିଁ କିଅ ।

ଖାଁ—ତୋବା, ତୋବା । ଓ ବାତ୍ ହାମ୍ କବାନ୍‌ସେ କଭି ନିକଲେ ସେକତେ ?

ଚୌ—ତବ୍ ?

ଖାଁ—ଅଡ୍ ଭୂଲ୍ ଗଏ—ଅଫସୋସ—

ଚୌ—କଅ ବାତ୍ ? ଜଲ୍‌ଦି ବୋଲେ—ଅଭି ଟାଇମ୍ ହୋ ଚିଥ

ଖାଁ—ମାଲୁମ ହୋତା, ଆପକା ମିଜାଜ ସରଫ ନେହି—ଅଚ୍ଛା, ହୁଜୁର୍ ଭୋର ରୋଜ ମୁଲାକାତ୍ ହୋଗା—ଅଭେଭୀ ହୁଜୁର—

ସଲାମ । [ ଗୁଳିଯାଉଥିଲେ ଓ ଚୌପଟି "ସଲାମ" କହି
ମଧ୍ୟ ଗୁଳି ଯାଉଥିଲେ—ତା ପର ବନ୍ଧୁଯାଇ ]

ଚଠ୍—ଖାଁ ସାବ୍ ।

ଖାଁ—ଜୀ ହୁଜୁର ?

ଚଠ୍—ହାଁ ତୁମକୋ—ଇଧର ଅର୍ଜ—ହାମ ବାତ୍ ଦଅଥା, ନା ?

ଖାଁ—ଉଟେସ୍‌ପର ଅଯ୍ୟୁନେ—ଦେଖା ହୁଜୁର ।

ଚଠ୍—ଟିକାନା ରୁପେୟା ?

ଖାଁ—ଅସୁଲ ଯାବେ—ଅଜ ସ୍ତେଜଉକ୍—ଦେଖିଏ ହିସାବ
( ହିସାବ ଖାତା ଦେଖାଇଲା )

ଚଠ—ହିସାବ—ହାମ୍ ଖୋଦ୍ ହିସାବ ଦେଖେଙ୍ଗେ—ଖୋଦ୍
ଦେଖେଙ୍ଗେ—

ଖାଁ—ହରଫ୍‌ସେ ଆପ ଜରୁର ଚହ୍ନିନ ଲେଙ୍ଗେ ଆପକା
ଦୋସ୍ତକା—

ଚଠ୍—( ଖାତା ଛୁଟି ପକାଇ ଦେଇ ) ଦୋସ୍ତ—ଦୋସ୍ତ ।—କିଏ
କା'ର ଦୋସ୍ତ ?—ମୁଁ ଦେବି ନାହିଁ—ମେରା ଟଙ୍କା—
ନକ୍‌ଲେ—ହାରୋ—ଯୋ' ଲିଆ ଉସ୍‌ସେ ଅଦାୟ
କରେ ।

ଖାଁ—( ଖାତା ଉଠାଉ ଉଠାଉ ) ଅଜ୍ ଯାତାହୁଁ ସାବ୍ । ଇସ୍
ଦଫେସେ ଅଦାୟ କରେଙ୍ଗେ—ବଡ଼କା ହାର—

ଚଠ୍—ବଡ଼କା ହାର !

ଖାଁ—ହାଁ ହୁଜୁର—ବଡ଼ା ମୋତିକା ହାର ବେଚକର—

ଚଠ—ବେଚକର୍—ଅଦାୟ କରେଗେ ?

ଖାଁ—ଅଲବତ୍, ହୁଜୁର—

ଚନ୍ଦ—ତେବେ ରେ ଶଇତାନ ! [ ହାତରୁ ପେଗା ଛାଡ଼ି ଅଣିବାକୁ ଯାଇ—କୁନ୍ତେଇ ] ମାଫ୍ କରଏ—ମାଫ୍ କରଏ, ଖାଁ ସାହେବ—ଲିଜଏ ତୋମାର ରୁପେୟା — [ ଟଙ୍କା ଦେଇ ଚାଲି ଯାଉଥିଲେ— ହଠାତ୍ ଫେରିଅସି ] ଏକ- ବାତ୍, ଖାଁ ସାହେବ !

ଖାଁ—ଫର୍ମାଇୟେ, ହୁଜୁର !

ଚନ୍ଦ୍ — ( ଗଦ ଗଦ ଭାବରେ ) ଓ ହାଟ ବେଚନେକା ବାତ୍ ଔର କଭି ମୁହଁପର ନେହି ଲେନା ।

[ ଚାଲିଗଲେ ଠିକ ଠିକ ମାତାଲଙ୍କ ପରି ]

ଖାଁ—ଲେୟା ସଲାବ—ମୁଁ ଝୁକୋ ଲେୟା—ଛୁପି ମିଲ୍ ଗିଆ ( ଟଙ୍କା ଗଣି ଦେଖୁ ଦେଖୁ ) ଏଁ ! ଡଢ଼୍ ହଜାର ! ମେରି ଦୋକାନ ତୋ ଅଢ଼ାଇ ହଜାର—ଓ ଚଉଠି ସା'ତ୍ ! ଓ ଚଉଠି ସା'ବ !—ଯବ କିଅ ଦବାନା ହୋ ଗିୟା —?



## ପଞ୍ଚମ ଦୃଶ୍ୟ

[ ଜଜ । ମିଃ ଦାସ ଓ ମନୀଷା ଉପବିଷ୍ଟ ଥିଲେ— ମନୀଷା ଅନୁଚିନ୍ତା—ମିଃ ଦାସ ଆଶ୍ୱାସନା ଦେଉଥିଲେ, ଅଯଶାର ଗୁପ୍ତ ଅଭିସନ୍ଧି ହାସଲ କଲା ଭଳି ଜଣା ପଡ଼ୁଥିବ ]

ମିଃ ଦାସ—ମନୀଷା ! ତୁମେ ତୁମର ଭୁଲ ବୁଝି ପାରିଛ—ସେଥିରେ ଯେ, ମୋର କି ଆନନ୍ଦ, କହିଲେ ନ ସରେ ।

ମନୀଷା—ପ୍ରକୃତରେ, ମୁଁ ଗୋଟାଏ ଉଡ଼ା ଖବରରେ ମାତିଯାଇ, ବେଗୁରାମର ପରାମର୍ଶରେ ପଡ଼ି—ଏପରି କଣ୍ଡ ପକାଇ-ଥିଲି ।

ମିଃ ଦାସ—ହେଲେ, ସବୁ କଥାର ମୂଳରେ ସେହି ମାତାଲଟା, ଏ ଝିଅଲ ସଦାବେଳେ ରଖିଥିବ ।

ମନୀଷା—ଏତେ ପାଜି, ବଦମାସ ସେହି ମାତାଲଟା ?

ମିଃ ଦାସ—ମାତାଲ କେବେ ସାଧୁ ସଜ୍ଜନ ହୋଇ ଥାଏ, ମନୀଷା ? ବାସ୍ତବଦର୍ଶୀ ହୋଇ ତୁମେ ଏହା ବିଶ୍ୱାସ କରିଥିଲ—ଆଶ୍ଚର୍ଯ୍ୟ !

ମନୀଷା—ଉଃ ! କି କୁହୁକ ଜାଣେ ସେ ମାତାଲଟା —

ମିଃ ଦାସ—ମନୀଷା ! ଥରେ ଅଇନା ପାଖକୁ ଯାଇ, ଫଟୋ ସଙ୍ଗେ ନିଜକୁ ମିଳାଇ ଦେଖ ତ—ତୁମର ସେ ସୁନ୍ଦର ଚେହେରା ହୋଇ ଯାଇଛି କି କଦର୍ଯ୍ୟ—

ମନୀଷା—[ ଅଇନା ପାଖକୁ ଯାଇ, ଫଟୋ ସଙ୍ଗେ ମିଳାଇ ଦେଖି ] ସତେ—ଉଁ !

ମିଃ ଦାସ—( ପାଖକୁ ଯାଇ ) କଅଣ ହେଲା ମନୀଷା—?

ମନୀଷା—ସେହି ହାରଟା—

ମିଃ ଦାସ—ବନ୍ଧୁ-ପତ୍ନୀଙ୍କୁ ଦିଅ, ବନ୍ଧୁର ଉପହାର ନା ?—

ମନୀଷା—ବନ୍ଧୁ ନୁହେଁ—ବନ୍ଧୁ-ଦ୍ରୋହୀ — ବନ୍ଧୁ-ଦ୍ରୋହୀ— ( ଛିଣ୍ଡାଇ ପକାଇବାକୁ ଯାଉଥିଲେ )

ମିଃ ଦାସ—ନା, ନା, ଛିଣ୍ଡାଇ ପକାଅ ନା—ମନୀଷା ! ବନ୍ଧୁ-ଦ୍ରୋହୀର ପ୍ରତିଶୋଧ ନେବାଟା ଏତିକିରେ ତା' ହେଲେ ଛିଣ୍ଡିଯିବ—

ମନୀଷା—ତେବେ କଅଣ, ଏ ନାଗଫାସଟା ଗଳାରେ ଲୁଡ଼ାଇ ଥିବ ?

ନି: ଦାସ—ନା—"ନାଗ"ର ପେଞ୍ଚ କାହିଁ ? ଦଅ, ମୁଁ ଧୀରେ ଧୀରେ ସ୍ୱାକୁ ତୁମ ବେକରୁ ଓଟାରି ସେଥିରେ ପୁରାଇବି—ତା'ପରେ, ପେଞ୍ଚ ସମେତ ଏଇ ବିଷଧରକୁ ଘେନିଯାଇ, ବୈଦ୍ୟ'ବେଣୀ ନାଙ୍କର ଅଗରେ ଫିଟାଇ ଦେବି—[ ହସ ଉଠିଲେ—ମନୀଷା ଯେପରି ନାଗସାପର ଚୋଟ, ମର୍ମେ ମର୍ମେ ଅନୁଭବ କଲେ—]

ମନୀଷା—ଉଃ ।

ନି: ଦାସ—ଏତିକି ଚମକି ଉଠିଲ ଯେ—

ମନୀଷା—ନା—ନା—ତୁମେ ମୋ ପାଖକୁ ଆସ—ଅସ୍ଥିର—ଅସ୍ଥିର ଲାଗି—

[ ଯେତିକି ବେଳେ ରେଡ଼ିଓରେ ଶୁଣାଗଲା—ଅଲ ଇଣ୍ଡିଆ ରେଡ଼ିଓ, କଟକ—ବର୍ତ୍ତିମାନ ଛନ୍ଦାଦେବୀ ଆଧୁନିକ ଗୀତ ଗାଇବେ—]

ମନୀଷା—'ଛନ୍ଦା'। ବନ୍ଦକର—ବନ୍ଦକର—ଛନ୍ଦା ଗୀତ ଗାଇବ ନି ଯେ ଛନ୍ଦା ମନୀଷାକୁ ତିରସ୍କାର କରିବ, ବାନ୍ଧବୀ ପ୍ରତି ବାନ୍ଧବୀର ଅନ୍ୟାଯ୍ୟ ଧାରଣା, ଅଶୋଭନ ଆଚରଣ ଯୋଗୁଁ;—ବନ୍ଦ କର—ବନ୍ଦ କର—

ନି: ଦାସ—ବେଶ୍, ବନ୍ଦ କରି ଦେଉଛି ।

[ ପ୍ରବେଶ କଲେ ରାମଦୁଲାଲ ଓ ଗୀତା ]

ରାମ ଦୁଲାଲ—ବେଶ୍ ବେଶ୍, କାହାନ୍ତି ଦୁହେଁ ?

ଗୀତା—ଦେଖନ୍ତୁ, ଏଠି ବସି ଆମୋଦ କରୁଛନ୍ତି ।

ରାମ—ମଦ ? କାହିଁ ମଦ ଖାଉଛନ୍ତି ?

ଗୀତା—ମଦ ନୁହେଁ, ଆମୋଦ କରୁଛନ୍ତି—

ରାମ—ଅମୋଦ ? ହଁ ହଁ, ଅମୋଦ ପାଇଁ ଖାଣ୍ଟି ମଦ; ହେଲେ ଅମୋଦ ସେଥିରେ ମିଳେ ନାହିଁ—ଖାଲି କାନ୍ଦିବା ସାର ହୁଏ। କାହିଁ, ନାଛ ନାତୁଣୀ ମୋର ?

ଗୀତା—ପାଖକୁ ଅସ, କପୋତ କାପୋତୀ—( ମନୀଷା ଓ ମି: ଦାସ ନିକଟକୁ ଗଲେ )

ରାମ—ଶୁଣ, ମୁଁ କି ଦିନେ ମଦ ଖାଉଥିଲି—ସେଥିପାଇଁ ତୁମ ଅଜା ସଙ୍ଗେ ହୋଇଥିଲା ଅପଡ଼—ସେ ରହୁଥିଲା ସେତାଲରେ, ତାର ଅଭିମାନ ନେଇ—ଅଜ ମୁଁ ରହୁଥିଲି ଏକତାଲରେ, ମୋର ମଦ ବୋତଲ ନେଇ। ଦିନେ ହେଲା ପ୍ରବଳ ଭୂମିକମ୍ପ—ଦୋତାଲା ଏକତାଲା, ଏକ ହୋଇଗଲେ—ମୋର ମଦ ବୋତଲ ଭାଙ୍ଗି ଚୂନା ହୋଇ ଗଲା—ତୁମର ଅଜାର ମାନ ତୁଟି ଛତରେ ସ୍ଥଳ ହୋଇଗଲା—ଅଜ ଅମେ ଦୁହେଁ କୁଣ୍ଢା କୁଣ୍ଢି ହୋଇ ମେଦିନୀ ଭସାଇ ଦେଲୁ ଅଖି ପାଣିରେ।- ଗୀତା ! ଏମାନେ ସେଇଯା କରିବେ ତ—ଏମାନେ ସେଇଯା କରିବେ—ସଂସାରର ହିତ। ବେଶ୍ ବେଶ୍, ତୁମେ ଅମୋଦ କର— ଅମୋଦ କର। ଅ— ଅ ଗୀତା, ବାହାର ଅ—

( ଗୁଲିଗଲେ ଚୋଟାଏ ଭିଡାବେଗରେ )

ମି: ଦାସ—ମୋତେ ମାତାଲ୍ କରି ଦେଲ ତ ଗୀତା ?

ଗୀତା—ତୁମେ ସେ ମାତାଲକୁ ଘରେ ପୁରାଅ କାହିଁକି, ଜାଣ ତ ?

ମି: ଦାସ—ମୁଁ କ'ଣ ବୁଝିବି ? ଫାଙ୍କ ପାଇଲେ ସେ ନେ, ଘରେ ଘରେ ପଶେ—ହୁଏତ ତୁମର ମନର ଫାଙ୍କ ଭିତ୍ରେ ଏତେବେଳକୁ କେଉଁଠି ଦିବ୍ୟ ମଦ୍ୟପାନ କରୁଥିବ— ଯାଇ ଦେଖ।

ଗୀତା—ଶିଥଲ ଶେଫିଦ— I am a rocky bed ( ଅଇ
ଏମ୍ ଏ ରକି ବେଡ଼୍ )—

ମି ଃ ଦାସ—ଅର୍ଥାତ୍ ଶକ୍ତ ଚଟାଣ—ହାଃ—ହାଃ—

ଗୀତା—( ଯାଉ ଯାଉ ଫେର ) ହଁ, ଶୁଣ. ଗୋଟାଏ ଶୁଭବାର୍ତ୍ତା—
ତୁମ୍ଭମାନଙ୍କର ବିବାହ ହେଉଛି, କନ୍ତୁ ଉତ୍ସବ ବାଙ୍କା
ଅଛି; ସେଥିପାଇଁ, ବିବାହର ପ୍ରଥମ ସ୍ମୃତି-ଉତ୍ସବ ଏଥର
ଘରୀ ଜାକଳମଙ୍କରେ ହେବ ବୋଲି, ଅଜା ଠିକ୍ କରିଛନ୍ତି ।
ତୁମ୍ଭମାନଙ୍କ ଉପରେ ଭାର ଦଆ ହୋଇଛି, ତୁମ୍ଭର
ବଂଧୁ ବାଂଧବୀମାନଙ୍କର ନିମନ୍ତ୍ରଣର—ଚାଲିଲି---
( ପ୍ରସ୍ଥାନ )

ମନୀଷା—ଦେଖ, ସହରର କାହାରିକି ନିମନ୍ତ୍ରଣ କରିବାକୁ ବାଙ୍କ
ରଖିବ ନାହିଁ ।

ମି ଃ ଦାସ—ସେହି ମାଡାଲିଟାକୁ ବି ନୁହେଁ । ହାଃ - ହାଃ—ହାଃ—
[ ମନୀଷାର ଅସହନୀୟ ହୋଇ ଉଠିଲା—କଅଣ
କହିବାକୁ ଯାଉଥିଲା, ଟେଲିଫୋନ୍ ବାଜି ଉଠିଲାରୁ ମନୀଷା
ଦୌଡ଼ଯାଇ ]

ମନୀଷା—ହାଲୋ—କିଏ ?—କିଏ ? ଉତ୍ତର ନାହିଁ, କାହିଁକି ?

ମି ଃ ଦାସ—( କେମିତି ହୋଇ ଗଲେ ) ଘୁଡ଼ ଦାଈ—ଝେଣ୍ଟି
ମହକିଲା ଫହକେଲା ହୋଇଥିବ—

ମନୀଷା—ହେଲେ, ନାଁ ଜଣ୍ଣ ପର—ଛନ୍ଦା ନୁହେଁ ତ ?

ମିଃ ଦାସ—ତୁମର ଯେପରି ମନର ଛନ୍ଦ [ ହାତଟିକୁ ପକେଟରେ
ନେଇ ଚାଲିଗଲେ—ମନୀଷା କିଛିକ୍ଷଣ କଅଣ ଭାବିଲେ—
ତା'ପରେ ଚୌକିରେ ବସି ମୁଣ୍ଡ ମୁହଁ ଲୁଚାଇଲେ ]



# ଷଷ୍ଠ ଦୃଶ୍ୟ

[ ପାର୍କର ଅଖପାଖ ରାସ୍ତା—ମଟରର ହର୍ଣ୍ଣ ଶୁଣାଗଲା—ମିଃ ଦାସ ଓ ଛନ୍ଦା ଦେବୀ ପ୍ରବେଶ କଲେ, ଭ୍ରମଣ କାଳୀନ ସାଜ ପୋଷାକ ଦୁହିଁଙ୍କର—ଛନ୍ଦାର ଗଳାରେ ଶୋଭା ପାଉଥିଲା, ମନୀଷାର ସେହି ମୁକ୍ତା ମାଳା ]

ଛନ୍ଦା—ବେଶ୍ ମଟରଟି ।

ମିଃ ଦାସ—ନୂଆ ଭାବ-ପ୍ରୀତକୁ ନୂଆ ମଟର, ବେଶ ହେବ ତ ?

ଛନ୍ଦା—ହେଲେ, ମନୀଷା କିଣିଚ. ଅଜ ତାର ସ୍ୱାମୀଙ୍କ ପ୍ରୀତ ଉପହାର ଦେଇଚ ।

ମିଃ ଦାସ—ଅତଏବଂ ଏହି ପ୍ରୀତ-ଯାନରେ ସ୍ତ୍ରୀଙ୍କ ଯେଉଁ ସ୍ୱାମୀର ପ୍ରୀତ-ବହାର କରିବା ଉଚିତ ଥିଲା—ନୁହେଁ ?

ଛନ୍ଦା—ନିଶ୍ଚୟ—

ମିଃ ଦାସ—ମିସ୍ ଛନ୍ଦା ଦେବୀ ଭୁଲ ଯାଉ ପାରନ୍ତି—କିନ୍ତୁ ମିଃ ଦାସ ନୁହେଁ ।

ଛନ୍ଦା—କେଉଁ କଥା ?

ମିଃ ଦାସ—ଠିକଇ ପୂର୍ବେ ଯାହା କହୁଚ—ବବାହ-ସୂତ୍ର ପାଳବ ମନୀଷା—

ଛନ୍ଦା—ଅଜ ବବାହ-ପ୍ରୀତ ? ଛନ୍ଦା—(ହସିଲେ)

ମିଃ ଦାସ—ତଥାପି ଭୁଲ କରୁଛନ୍ତି, ଛନ୍ଦା ଦେବୀ ।

ଛନ୍ଦା—ମାନେ ?

ମିଃ ଦାସ—ବବାହ-ପ୍ରୀତ ନୁହେଁ—ବବାହର ବନ୍ଧାବନ୍ଧ ନାସ୍ତ ବାହାରେ ଯେଉଁ ପ୍ରୀତ—

ଛନ୍ଦା—ଅର୍ଥାତ୍, ଗୋପନ ପ୍ରୀତ—(ଗୀତ ସ୍ୱରେ) 'ଗୋପନ ପ୍ରୀତି ସ୍ୱପ୍ନ ସୁଅଧାଅ ରେ'--ଆପଣ ସ୍ୱର ରସିକ ପାଲଟି ଯାଉଛନ୍ତି ତ ?

ମିଃ ଦାସ—ହେଲେ, କଳା-ରସିକା ଛନ୍ଦା ଦେବୀଙ୍କର ରସର ପରଶ୍ରୁଣ – ଏ କଥା ଭୁଲିଯିବେ ନା।

ଛନ୍ଦା—ଆପଣ ବେଶ୍ ଗ୍ରେଟେ ଦେଉଛନ୍ତି – ମୋର ସେ ଦିନର କଥା-ଢଙ୍ଗ ଯେନ।

ମିଃ ଦାସ—ସର୍ଗ ଯିବେନ, ଛନ୍ଦା ଦେବୀ—ଅଭିଜାତ୍ୟକୁ ତ ବଞ୍ଚାଇ ରଖିଛୁ ଏହି ଢଙ୍ଗ ଦ୍ୱାରା।

ଛନ୍ଦା—ଏ ବ ଗୋଟାଏ କୃଷ୍ଟି—ମିଃ ଦାସ।

ମିଃ ଦାସ—ଶିକ୍ଷିତା ହେଲେ ବ ମନୀଷାର ସେ କୃଷ୍ଟି ନାହିଁ ବୋଲି, ମୂର୍ତ୍ତିମତୀ କୃଷ୍ଟି-ଦେବୀ ମିସ୍ ଛନ୍ଦାଙ୍କୁ ଏତେ ଆରାଧନା ମୋର।

ଛନ୍ଦା—ତା' ହେଲେ ମିଃ ଦାସ ଅଭିଜାତ୍ୟର ଜଣେ ପ୍ରଧାନ ଯାଜକ—ଏହି ଅଭିନନ୍ଦନ ଜଣାଉଛି,—ହଁ ଭଲ କଥା –

ମିଃ ଦାସ—କ'ଣ ?

ଛନ୍ଦା—ମନୀଷାକୁ ଏହି ମୋତିହାର ଆପଣଙ୍କ ବଂଧୁ ପ୍ରୀତି-ଉପହାର ଦେଇ ଥିଲେ—ଆଜ ମନୀଷା ତାକୁ ହୃଦୟର ହାର କରି ଗଳାରେ ଲମ୍ବାଇ ଥିଲା—ମୁଁ ସେହି ହାର ପିନ୍ଧିବି, ଠିକ୍ ହେବ ତ ?

ମିଃ ଦାସ—ଏ ବ ଗୋଟାଏ କୃଷ୍ଟି, ମିସ୍ ଛନ୍ଦା ଦେବୀ।

ଛନ୍ଦା—କେମିତି ?

ମିଃ ଦାସ—ମନୀଷା ତ ସେଇ ହାରକୁ ସ୍ୱର୍ଣ୍ଣ ସ୍ୱର୍ଣ୍ଣ ଲୁଡ଼ପତ୍ର ଦେଇଛି।

ଛନ୍ଦା—ସୁଭଗ୍ରା, ବିବାହ ବିଚ୍ଛେଦ ହେଲେ ଅଭିଜାତ୍ୟର ଗୋଟାଏ ଭୂଷଣ —

ମି଼ଃ ଦାସ—ସେମିତି ସ୍ତ୍ରୀତ୍ୟାଗ ଦେଖା ଏହ ହୋଇଛି – ଅଭିଜାତ୍ୟ କୃଷ୍ଟି-ଦେହର କଣ୍ଠ ଭୂଷଣ ହୋଇ ରହିବ –

ଛନ୍ଦା—ବାଃ—ବାଃ, ଦୀର୍ଘଜୀବୀ ହେଉ ଆମର କୃଷ୍ଟି !

ମି଼ଃ ଦାସ—ଆମେନ୍ ।

ଛନ୍ଦା—ତେବେ ଆଜ ସଙ୍କୋଚ କଣ ?

ମି଼ଃ ଦାସ—ନା—ନା—ଆପଣ ନିଃସଂକୋଚରେ ଏହି ହାତଟି ଧାରଣ କରି, ବିବାହର ସ୍ମୃତି-ଉତ୍ସବକୁ ଗୌରବମୟ କରିବେ—ଏହାହିଁ ମୋର ଏକାନ୍ତ ବାସନା—

ଛନ୍ଦା—ଏଇଥିରେ ମୁଁ ପାଇବି ପ୍ରେରଣା – ହଁ, ଉତ୍ସବ କେବେ ?
(ହାତଟାକୁ ହଲଉ ଥିଲେ)

ମି଼ଃ ଦାସ—ଆଗାମୀ ଶନିବାର—

ଛନ୍ଦା—ଚାଲନ୍ତୁ, ପାର୍କକୁ ଯିବେ ପରା ? [ ଯାଉ ଯାଉ କାହାକୁ ଦେଖି ମି଼ଃ ଦାସ ଅଟକି ଗଲେ ] ଅଟକି ଗଲେ ଯେ—କ'ଣ ସେହି କନ୍ଧୈଲଟାକୁ ଦେଖି ?

ମି଼ଃ ଦାସ—ନା—ନା, ମୁଁ ତା'ଠାରୁ ଆରେ, ଏ'କଥା ମନେ କରିବେ ନା, ଛନ୍ଦା ଦେବୀ । ତେବେ—ତେବେ—ସେ ମୋର କଣେ କ୍ଲାଏଣ୍ଟ—

ଛନ୍ଦା—ମକ୍କେଲ ? ଭୟ କ'ଣ ?

ମି଼ଃ ଦାସ—ଅସଭ୍ୟ ଜାନୁଆର କି ନା—ହୁଏତ ଦାଣ୍ଡ ମଝିରେ--

ଛନ୍ଦା—ମକଦ୍ଦମା କଥା ପକାଇବେ ? କ୍ଷତି କ'ଣ ? ରୋଜଗାର କରିବା କଥା ।

ମିଃ ଦାସ—ହେଲେ, ଗୋଟାଏ Prestige (ପ୍ରେଷ୍ଟିଜ), ଅଛି ତ ?
ଅପଣ ରଘୁଚନ୍ଦ୍ର ସାଙ୍ଗରେ—
ଛନ୍ଦା—ବେଶ, ମୁଁ ଅଡ଼େଇ ଯାଉଛି । (ପ୍ରସ୍ଥାନ)
ମିଃ ଦାସ—ନା—ନା—( ବାଧାଦେବାକୁ ଯାଉଥିଲେ )
[ କାବୁଲିବାଲା ଖାଁ ସାହେବ ପ୍ରବେଶ କରି ]
ଖାଁ—ଠେର ଯେ ଠହରଏ, ବାବୁଷ୍ଟର ସାବ୍ !
ମିଃ ଦାସ—( ପାଖକୁ ଯାଇ ) ଦେଖୋ, କେନାନା ଅଦମି ସାଥ୍‌ମେ ହେଯ୍—
ଖାଁ—ହାମ୍‌କୁ ମାଲୁମ ଜୀ—
ମିଃ ଦାସ—ଦେଖୋ—ତୁମାରା ରୁପେୟା—
ଖାଁ—ମେରା ରୁପି ତୋ! ହାମେ ମିଲିଗିଆ । ଲିକିଏ ହ୍ୟାଣ୍ଡନୋଟ
( Hand note ) ଓ୍ୟାପସ୍, ଔର ୫୦୦ ରୁପି—
ମିଃ ଦାସ—[ ଉେଲକା ହୋଇ ଚାହିଁରହିଲେ ଟଙ୍କା ଓ ହ୍ୟାଣ୍ଡନୋଟ ଧରି ]
ଖାଁ—ହାମ୍ ସୁଧ ସେ କାଟକେ ରୁପି ନେଇ ଦେତା, ବାବୁଷ୍ଟର ସାବ୍ !
ଅପ୍‌କା ଦୋସ୍ତ ଜ୍ୟାଦା ଦ ଏଥେ - ତୁମ୍ଭ୍ ତୁମ୍ଭ୍‌କର
ଚଟପଟୀ ସାବକା ପତ୍ର ନେହି ମିଲି ।
ମିଃ ଦାସ—ଦେଖୋ, ଖାଁ ସାବ୍—ଓ ହାମାରା ରୁପେୟା—ହାମ
ଦୋସ୍ତକୁ ଦଥା, ତୁମକୁ ଦେନେକା ବାସ୍ତେ ।
[ ଖାଁ ସାହେବ କଣ କହିବାକୁ ଯାଉଥିଲେ, ସେତିକିବେଳେ
ପଟର ଘଣ୍ଟି ବାଜୁଥିଲା ] ଉର ବାତ୍ କଲ୍ ହୋଗା—
ସେଲମ—
ଖାଁ—( ନେଟଟ ଅଡ଼କୁ ଚାହିଁ ) ଜରୁର ଓହି ଚକ୍ର ହୋଗି—
ଗଲେମେ ଓହି ମୋଡ଼କା ହାଦ୍—ସେଲମ—ସେଲାମ—
( ଚାଲିଗଲେ )

[ ଛନ୍ଦା ପୁଣି ପ୍ରବେଶ କଲେ—ମିଃ ଦାସ ଦ୍ୟାଣ୍ଡ କୋଟ ହାତରେ ଧର ]

ମିଃ ଦାସ—ଏଇଟା ଗୋଟାଏ ବ୍ରୀଫର ଖସଡ଼ା—

ଛନ୍ଦା—ଅଜ୍ଞ, ଏ' ସନ୍ଧ୍ୟା ଟଙ୍କା । ବେଶ୍ ତ, ବ୍ରୀଫର ଖସଡ଼ା ରହୁ ବାରିଷ୍ଟର ସାହେବଙ୍କ ବୁକୁ ପକେଟ୍‌ରେ—

ମିଃ ଦାସ—ଅଜ୍ଞ ଏ' କୋଟ ଛାଡ଼ା ଚଳୁ, ଛନ୍ଦା ଦେବୀଙ୍କ ବୁକୁ ଉହାଡ଼ରେ । [ ଉଭୟେ ହସିହସି ହାତ ଧରା ଧରି ହୋଇ ଚାଲି ଗଲେ ]



## ସପ୍ତମ ଦୃଶ୍ୟ

[ ଚଟପଟିଙ୍କ ଅଫିସ ଘର—ଚଟପଟି ସାହେବ କାଗଜ ପତ୍ର ଦେଖୁଥିଲେ ]

ଚଟପଟି—[ କଲିଂ ବେଲ୍ ବଜାଇବାରୁ ଅଫିସ ବେହେରା ପ୍ରବେଶ କଲା ] ବଡ଼ବାବୁ—

[ ବେହେରା ଚାଲିଗଲା—କିଛି କ୍ଷଣ ପରେ ବଡ଼ବାବୁ ପ୍ରବେଶ କଲେ ]

ବ-ବାବୁ—ସ୍ୟାର୍ ।

ଚଟ୍‌ପଟି—ଏତେ ଉଜ୍ଜଟାର୍ — କହୁ ଦଅନ୍ତୁ, ସାହେବ ଅସୁସ୍ଥ—ଦେଖା ହେବ ନାହିଁ । (ବଡ଼ବାବୁ ଠିଆ ହୋଇରହିଲେ) ଠିଆ ହୋଇ ରହିଲେ ଯେ ?

ବ-ବାବୁ—ଆପଣ କ'ଣ ଚିକ୍ରତରେ ଅସୁସ୍ଥ, ସ୍ୟାର ?

ଚନ୍ଦ୍ର—ଓ, ମୁଁ ମିଛ କହେ ନାହିଁ ପରା ?—ବଡ଼ ବାବୁ, ବସନ୍ତୁ ।
ଅଚ୍ଛା ବଡ଼ ବାବୁ ! ଗୋପନରେ ଯେବେ କେହି କୌଣସି ବନ୍ଧୁର ଉପକାର କରୁଥାଏ, ସେଥିରେ ତ ତାର ଆନନ୍ଦ ପାଇବାର କଥା?—ତେବେ, ତାର ମନରେ ଶାନ୍ତି ନାହିଁ, କାହିଁକି ?

ବଡ଼ ବାବୁ—ମୋର ମନେ ହେଉଛି, ନିଶ୍ଚୟ ନିଃସ୍ୱାର୍ଥ ଭାବରେ ସେ ଉପକାର କରୁ ନ ଥିବେ—

ଚନ୍ଦ୍ର—ଓ, ବେଶ୍ !—ଆପଣ ଯାଆନ୍ତୁ—ଅଳ୍ପ ଅପେକ୍ଷା କରି କର ନ୍ତୁ ।

[ ବଡ଼ବାବୁ ଗୁଲିଗଲେ । ଚନ୍ଦ୍ରପତି ପାଦଚାରଣା କରୁ କରୁ ଯେପରି ଶୁଣିବାକୁ ପାଇଲେ ମିଃ ଦାସଙ୍କ କଣ୍ଠରେ, ପ୍ରଶ୍ନ ଉକ୍ତି—"ଯେଉଁ ନିର୍ମଳ ବାଲ୍ୟ ସ୍ମୃତିକୁ ମୂଳ କରି ଏତେଦିନ ତୋ'ଠାଏ ତ୍ୟାଗ ମହିମାର ବଡ଼ାଇ କରି ଆସିଛୁ, ତାକୁ ଅଳ୍ପ ମ୍ଳାନ କରି ଦେଉଛୁ, ତୋର କେଉଁ ଲୁଚା ଛପା ଭୋଗ ବାସନାରର ପ୍ରବୃତ୍ତି, କି ନା ?" ]

ଚନ୍ଦ୍ର—ଉଃ ! [ ପୂର୍ବୋକ୍ତର ଅନୁକ୍ରମରେ ଶୁଣିବାକୁ ଲାଗିଲେ— "ଯେଉଁ ବନ୍ଧୁ ପ୍ରୀତିକୁ ମୂଳଦୁଆ କରି ବନ୍ଧୁର ଘର ବାନ୍ଧିବାକୁ ଉଚ୍ଛନ୍ନ ହୋଇଛୁ, ତା'ର ଉହାଡ଼ରେ ତୋର ଘର-ଭଙ୍ଗାର ଅଭିସନ୍ଧି ଅଛି କି ନା ?" ]

ଚନ୍ଦ୍ର—ଠିକ୍ କହୁଛୁ—ଠିକ୍ କହୁଛୁ । ମୁଁ ବନ୍ଧୁ-ଦ୍ରୋହୀ—ମୁଁ ବନ୍ଧୁ-ପତ୍ନୀଙ୍କର ପ୍ରୀତିକୁ ଲୋଡ଼େଇ, ବନ୍ଧୁର ଉପକାରରେ ଢାଙ୍କି ଦେଇଛି—ଉଃ ! [ ବେଣୁଧର ଦୌଡ଼ି ଆସିଲେ— ଏଥର ଅଫିସ କର୍ମଚାରୀର ପୋଷାକରେ ]

ବେଣୁ—କଅଣ ହେଲା, ସ୍ୟାର ?

ଚନ୍ଦ୍—କିଏ ? ବେଚାରାମ ?
ବେଚ୍ଚ—ସ୍ୟାର୍ ।
ଚନ୍ଦ୍—ଅଫିସ ଛୁଟି କର ଦେଲି—ତୁମେ ଯାଇ ନ ?
ବେଚ୍ଚ—ମୁଁ ବଡ଼ ସାହେବଙ୍କର "ଏକାନ୍ତ", ମାନେ Personal
Assistant ( ପାର୍ସନେଲ ଆସିଷ୍ଟାଣ୍ଟ ) ।
ଚନ୍ଦ୍—ଆଜି ମୋର 'ଏକାନ୍ତ'ର ପ୍ରୟୋଜନ ନାହିଁ, ବେଚୁରାମ—
ତୁମେ ଯାଇ ପାର ।
ବେଚା—ପୁଣି କେତେବେଳେ ହାଜର ହେବି, ସ୍ୟାର୍ ?
ଚନ୍ଦ୍—ଅଜ ହାଜର ହେବାର ପ୍ରୟୋଜନ ନାହିଁ, ବେଚାରାମ—
ଏକାବେଳକେ ଛୁଟି !
ବେଚା—ବଞ୍ଚାଇଲେ ସ୍ୟାର, ନମସ୍କାର ।
( ଚାଲି ଯାଉଥିଲେ )
ଚନ୍ଦ୍—ବେଚାରାମ !
ବେଚା—ସ୍ୟାର୍ ।
ଚନ୍ଦ୍—ଚାକରୀ ତୁମେ ପାଇବ ତ ?
ବେଚା—ଅଉ ଚାକର କହିବ ନାହିଁ, ସ୍ୟାର୍ ।
ଚନ୍ଦ୍—କାହିଁକି ?
ବେଚା—"ଚାକର—ଡାଳ ଗଛର ଛାଇ"
ଚନ୍ଦ୍—ତେବେ, ବଞ୍ଚିବ କପର ?
ବେଚା—ବେଚାରାମ ଓକାଲତି କରୁଅଛିନ୍ତି ଅଉଣର କମିଶନ
ଦଲାଲି—ଏଇ କାମ କରି, ସ୍ୟାର ।
ଚନ୍ଦ୍—କେଉଁ ଅଉଣଜୀ୍ର ପାଖେ ?
ବେଚା—ମୋର ପୂର୍ବ ମୁନିବଙ୍କ ପାଖେ, ସ୍ୟାର ।
ଚନ୍ଦ୍—ମିଠା ଦାମ ପାଖ ପୂରାଇଦେଲ ତ, ମିଛେଇ ଦାମ ପାଖ
ପୂରାଇ ଦେବେ କି ?

ବେଚା—ମିଷ୍ଟର୍ ଦାସ ତ ଏଥର ସୁପାରଣ କରିବେ, ସ୍ୟାର !

ଚନ୍ଦ୍—ବୁଝିଛୁ—ପ୍ରିମିୟମ ଟଙ୍କା ମୁଁ ଦେଇଥିଲି, ଏଇ କଥାଟା ପଙ୍କଜା ଦେବୀଙ୍କ ଆଗରେ ପ୍ରକାଶ କରି ଦେବ। ନମକ୍-ହାରାମ—

ବେଚା—ପ୍ରିମିୟମ ଟଙ୍କା ପାଇଁ ନମକ୍ ଖାଇଛି ବେଚାରାମ, ତା' ପାଇଁ ହାରାମି କେବେ କରିବ ନି, ସ୍ୟାର୍ ।

ଚନ୍ଦ୍—ତେବେ ?

ବେଚା—ଖାଁ ସାହେବଙ୍କ ପାଖରୁ ଦାସ ସାହେବ ଯେଉଁ ଧାର କରଜ କରିଛନ୍ତି—

ଚନ୍ଦ୍—ବୁଝିଛୁ—ଦାସ ସାହେବଙ୍କ ହ୍ୟାଣ୍ଡନୋଟ ଟଙ୍କା ଚନ୍ଦ୍ରପତି, ସାହେବ ଶୁଝିଛନ୍ତି—ଏହି କଥା ପ୍ରମାଣ କରେଇବ ?

ବେଚା—ସେ କଥା ତ ତମାଦି ହୋଇ ଯାଇଛି, ସ୍ୟାର୍ ।

ଚନ୍ଦ୍—କଅଣ ?

ବେଚା—ବେଚାରାମର ଚାକିରି ସମୟ ଭିତରେ ପରି ଏହା ଘଟିଛି, Sir !

ଚନ୍ଦ୍—ଆଉ ତେବେ ?

ବେଚା—ଛନ୍ଦା ଦେବୀଙ୍କୁ ମଟର କିଣି ଦେବେ, ସେଥିପାଇଁ ମଃ—ଦାସ ପୁଣି ଯେଉଁ ଧାର କରିଛନ୍ତି ।

ଚନ୍ଦ୍—ପୁଣି ଧାର ?—କେତେ ?

ବେଚା—୫,୦୦୦୯ ଟଙ୍କା ।

ଚନ୍ଦ୍—ଟଙ୍କାର ମାତ୍ରା କମେ ବଢି ଚାଲିଛି ଦେଖୁଚି ।

ବେଚା—ତା ସଙ୍ଗେ ସଙ୍ଗେ ଖାଁ ସାହେବର ସୁଧର ହାର ବି କେଶ୍ ବଢି ଚାଲିଛି । ଆଗେ ଥିଲା, ଟଙ୍କାରେ ଦୁ'ଅଣା—ଏବେ ଟଙ୍କାରେ ଚାରିଅଣା ।

ଚନ୍ଦ୍—ଏଥିରେ ପଙ୍କଜା ଦେବୀଙ୍କର କ'ଣ ?

ବେରା—"ବବ ସାହେବ କା ଏକଠୋ ମଠର ଚାହ୍" କହ୍
ମନ୍ଦାକ୍ଷା ଦେବୀଙ୍କ ନାମରେ ଝଙ୍କା କରନ୍ତ କଲେ । ସେ
ଯେଉଁ କଳଙ୍କ ଲଗାଇଛନ୍ତି—ସେଇକଥା ମନ୍ଦାକ୍ଷା ଦେବୀଙ୍କୁ
ଜଣାଇ ଦେବ, ସ୍ୟାର୍ ।

ଚଟ୍—ମନ୍ଦାକ୍ଷା ଦେବୀଙ୍କ ନାମରେ କଳଙ୍କ । [ ମନକୁ ମନ ଏହି
କଥା କହୁ୨ ହାତ ବାର ବାର ମୁଠେଇବାକୁ ଲଗିଲେ—
ଦାନ୍ତ ଓଠ ଚିପି ]

ବେରା—ଅସ୍ଳୁ, ସ୍ୟାର୍ ।

ଚଟ୍—ଖାଁ ସାହେବଙ୍କୁ ଥରେ—

ବେରା—ଡାକି ଅଣିବ, ସ୍ୟାର୍ ?

ଚଟ—ନା—ମୋର, କ'ଣ ?

ବେରା—ତା'ର ଡ ଅଛୁ ? ସେ ନିଜେ ଅସି ଦିନେ ହାଜର
ହେବେ, ସ୍ୟାର ।

ଚଟ୍—ମାନେ ?

ବେରୁ—ଖାଁ ସାହେବ ଭଲ କରି ଜାଣେ—ଚଟର୍ଜି ସାହେବ
ବାରିଷ୍ଟରଙ୍କର ଦୋସ୍ତ ।

ଚଟ୍—ଯୁଝିବ୍ ଝଙ୍କା ସୁଝିବ ଦୋସ୍ତ ।

ବେରୁ—ଥରେ ସୁଝିଥିଲେ, ମନ୍ଦାକ୍ଷା ଦେବୀଙ୍କ ହାର ପାଇଁ—ଏଥର
ସୁଝିବେ, ଛନ୍ଦା ଦେବୀଙ୍କ ମଠର ପାଇଁ ।

ଚଟ— ଗୁଲି ଯାଅ କହୁଚି ( ଗୁଲିଗଲେ ବେରୁବ୍ରମ—ମନକୁ ମନ
କହୁଥିଲେ ) 'ଥରେ ସୁଝିଥିଲେ ମନ୍ଦାକ୍ଷା ଦେବୀଙ୍କ
ହାରପାଇଁ—ଏଥର ସୁଝିବେ ଛନ୍ଦା ଦେବୀଙ୍କ ମଠର ପାଇଁ'—
ହାଃ —ହାଃ—ହାଃ—ଛନ୍ଦା ମୋର କିଏ ?ଅଉ ମନ୍ଦାକ୍ଷା—?
[ କପର ଏକ ଦୃଷ୍ଟିରେ ଗୁହାଁ ରହିଲେ—ନେପଥ୍ୟେ ଯୂଥି-
କାର ଗୀତ ଶୁଣାଗଲା ]

---

# ଅଷ୍ଟମ ଦୃଶ୍ୟ

ଯୂଥିକା — ଗୀତ

ସଖୀରେ······

ସେ କଳା ନାଗରେ ମନା କରନ୍ତେ ସୁମନା ରେ
କାହିଁ ଦଗାଦାରଙ୍କୁ ନାହିଁ ମୋ କାମନା — ମନା କରନ୍ତେ
ଭଣ୍ଟ ଦେଇ ରହେ କାହିଁ, ଗୁହିଁ କରି ଯାଏ ପାହି
ନ ବୁଝେ ଜାଗର ଜାଳ ରହିବା ବେଦନା — ( ନାହିଁ ) ୧।

କାଳିଆ ଦରବ ଅଙ୍ଗ ନ ଗୁହିଁବ ଭୋଳେ
ଝିଙ୍କି ତମାଳ ମାଳତୀ ଫିଙ୍ଗି ଦିଅ ଜଳେ
କଳା କାଚ କିଅ କାଢ଼ି ନ ପିନ୍ଧିବ କଳା ଶାଢ଼ୀ
କଜଳ ରଞ୍ଜି ନୟନେ ନ ଦିଅ ସାମନା ( କେବେ )-୨।

ନ ପିଇ କେବେଁ ଏଣିକି ନୀଳ ଯମୁନା ପାଣିକି
ମୋ ପାଇଁ ହୁଅ ଅନ୍ତର ଯେତେକ ଶ୍ୟାମଳୀ ସଖୀ
ମାନ ଏ ମାନିନୀ ବୋଲି ଶତ୍ରୁରେ ଚନ୍ଦନ ବୋଲି
( ଏବେ ) ଭଗାଅ ସେ ମୋର ଶୁଣାଇବ ଯେ ଶ୍ୟାମ ନାଁ ମନା-୩



## ନବମ ଦୃଶ୍ୟ

[ ଅଳନ୍ଦ—ମନୀଷା ଅଲଙ୍କାରିତା ହୋଇ ପ୍ରବେଶ କଲ୍ ]

ମନୀଷା—ମୋର ହାର—ମୋର ହାର—

[ ଗୀତା ପ୍ରବେଶ କଲ ]

ଗୀତା—ମନୀଷା, ତୁ ଏଠି ? ଗୀତା ଚଢ଼ୁ ପଢ଼ୁ ପୋଥି ସେମିତ ପକେଇ ଦେଇ—

ମନୀ—ଯାଉଛୁ ଗୀତା :

ଗୀତା—ହିଁ ମନୀଷା, ତୁମେ ତ କେହ୍ ବାହାରିଲ ନାହିଁ ଚୁଟ୍କେଟି ସାହେବଙ୍କ ନିମନ୍ତ୍ରଣ କରି—ମୁଁ ଏବେ ଯାଉଛୁ ତୋର ହୋଇ—ଈର୍ଷା ହେଉ ନା ତ ?

ମନୀ—ଗୀତା—

ଗୀତା—ପିଲ୍ଲ ' ବେଶ, ଅ—

ମନୀ—ନା । ସେ ଗୋଟାଏ ମାତାଲ—ଦଗାବାଜ । ତାଙ୍କୁ ଅବୌ ନିମନ୍ତ୍ରଣ ହେବ ନି—( ଦ୍ରୁତ ବେଗରେ ପ୍ରସ୍ଥାନ )

ଗୀତା—ସ୍ତୀଙ୍କ କଣୋଙ୍କ ମହାତ୍ମ୍ୟର ନମୁନା ଏ ନୁହେଁ ତ ?

[ ଗୃଲ୍ଲଗଳେ—ସେତିକି ବେଳେ ଯୁଥିକା ଶ୍ରୀରାଧାଙ୍କର ଅଭିମାନ ଭରା ପୂର୍ବୋକ୍ତ ଗୀତଟି ଗାଇ ପ୍ରବେଶ କଲ୍ ]

"ସେ କଳା ନାଗରେ ମନା କରିଦେ ସୁମନା ରେ" ଇତ୍ୟାଦି

[ ମନୀଷା ଧୀରେ ୨ ପ୍ରବେଶ କଲ୍ ଓ ଗୀତର ସ୍ୱରରେ ଅନ୍ତର୍ଜ୍ଞାନ ଶୂନ୍ୟ ହୋଇଥିଲ୍ ଏବଂ ତାହାର ନୟନ ଯୁଗଳ ଲୋତକାପ୍ଳୁତ ହୋଇଗଲ ]

ଯୁଥିକ—ଭରି ମିଳୁ ନି ।

ମନୀଷା—ତୁମେ ବିବାହ କରିଛ ?

ସୁପ୍ରିୟା—ନ ଭଲ ଭଲ ।

ମନୀଷା—ମାନେ ?

ସୁପ୍ରିୟା—ସେ ମାତାଲ, ଲମ୍ପଟ, ଦଗାବାଜ—ମୋର ଅନ୍ନ ଖାଇବ, ମତେଇ ସନ୍ଦେଇ ମାରିବ ।

ମନୀଷା—( ନିଜ ସଙ୍ଗେ ତୁଳନା କରି କିଛି ସମୟ ରହିଗଲା ) ତଥାପି, ତୁମେ ବିବାହ ଧର୍ମ ପାଳି, ମନ ଖୁସିରେ ଗୀତ ଗାଇ ବୁଲୁଛ ? ଆଶ୍ଚର୍ଯ୍ୟ ।

ସୁପ୍ରିୟା—ଆଶ୍ଚର୍ଯ୍ୟ କିଛି ନୁହେଁ ମା—ସଂସାର ତ ରଖିବାକୁ ହେବ ! ଅଉ……

ମନୀଷା—ଅଉ ?

ସୁପ୍ରିୟା—ଧର୍ମ ଯଦି ସତ୍ୟ ହୁଏ, ତେବେ ଦିନେ ନା ଦିନେ, ସତୀର ସ୍ୱାମୀ ବାଟକୁ ଫେରି ଆସିବେ—ଏହି ଦମ୍ଭ ଦେଇ ନିଶ୍ଚିନ୍ତ ରହିଛି ମା । ( ଗୁଲି ଯାଉଥିଲେ )

ମନୀଷା— (ବାଟ ଓଗାଳି) ମୋତେ ଆଶୀର୍ବାଦ କରିଯାଅ, ଭଉଣୀ ।

---

## ଦଶମ ଦୃଶ୍ୟ

[ ଚିଟପଟି ସାହେବଙ୍କର ଅଫିସ କକ୍ଷ – ଚିଟପଟି ସାହେବ ନୂଆ ଶୁଟ ପିନ୍ଧି ଆଇନାରେ ବେଶଭୂଷା ପରୀକ୍ଷା କରି ଦେଖୁଥିଲେ ଏବଂ ମନକୁ ମନ ଗୁଣୁ ଗୁଣୁ ସ୍ୱରେ ଗାଉଥିଲେ ]

ଚିଟ—ଗୀତା ଦେବୀ ନିମନ୍ତ୍ରଣ କରିବାକୁ ଆସି କହିଗଲେ, ବାହା-ଘର ହୋଇ ସେ ନିମନ୍ତ୍ରଣ କରୁଛନ୍ତି—ଅଉ କହନ୍ତୁର

ଧୋଇ ମୁଁ ଜାମିଷ୍ଟ ଭୁଲିବି। ବାଃ ବାଃ। [ଠିକ ଏହି ସମୟରେ ବେଗୁରାମ ପ୍ରବେଶ କଲେ—ତାଙ୍କର ସବୁ ନୂଆ ପୋଷାକ—ଗୋଟିଏ ଫୁଲ୍‌ଟାଏ ଠିଆଥିଲେ ] କିଏ ?

ଚେଚା—ବେଚାରାମ, ସ୍ୟାର।

ଟିଟ୍—ଓଁ ହୁଁ—ଅଣ୍ଟେରାସ୍ ବେଚ୍ରମ୍ (Bechrum)—ଥିଲ Fersonal Assistant ବର୍ତ୍ତମାନ personal secietary।

ବେଗୁ—ହୁଜୁରଙ୍କର ମେହେରବାନି ସ୍ୟାର।

ଟିଟ୍—ଆଶ୍ଚର୍ଯ୍ୟ, ବେଚାରାମ ମୁହଁରେ ଅଙ୍କ "ମେହେରବାନି" କେ !

ବେଚା—ପାଣ୍ଡୁଆ ବଢ଼ିବା ସଙ୍ଗେ ସଙ୍ଗେ, ଏଡନ ପର ନିଜର କଟିଯାଏ, ସ୍ୟାର :

ଟିଟ୍—ଅର୍ଥାତ୍ ଅନୁବଶ୍ୟ'ସ। ଠିକ୍ କହୁଛ—ଗୁଡ଼, ଏବେ କୁହ ତ ଏ ନୂଆ ସୁଟ୍‌ଟା କେମିତ ମନାଇଛୁ ?

ଟେଚା—ମୋ ପସନ୍ଦରେ କି ପସନ୍ଦ ହେବ, ସ୍ୟାର୍ ?

ଟିଟ୍—କାହିଁକି ନୁହେଁ ?

ଚେଚ୍—କଥାରେ ଅଛି ପରା—"ଆପରୁଚ ଖାନା—ପର ରୁଚ ପହେରନା"

ଟିଟ—ତେବେ—ଅପଡ଼ କାହିଁକି ?

ଚେଚ—ବେଗୁରାମ ତ ଅଡ଼ ପର ନୁହେଁ, ସ୍ୟାର ?

ଟିଟ୍—ତେବେଲେ, ବେଗୁରାମ ଆପ୍ ରୁଚର ପସନ୍ଦ ଯେପରି ଜାଣେ, ପର୍‌ରୁଚର ପସନ୍ଦ ବ ସେହପରି ଜାଣେ। ସେଇଥିପାଇଁ, ଅଙ୍କ କରାଣୀରୁ ସେକ୍ରେଟରୀ।

ଚେଚ୍—( ଟେଲମ କରିବାକୁ ଲାଗିଲେ ଘନ ଘନ ) ସୁକ୍ରିୟା, ସୁକ୍ରିୟା—ଧନ୍ୟବାଦ, ଧନ୍ୟବାଦ, ସ୍ୟାର।

ଚାଂ—ଏତେ ଧନ୍ୟବାଦ ମୁଁ ମୁଣ୍ଡରେ ପାରିବି ନା, ବେଗୁରାମ !
କେମିତି ମନାଉଛୁ ପୋଷାକ ?

ବେଗୁ—( ନିରେଖି ଦେଖି ) ଭୁଲ ବନ୍ଧୁ—ବିଲକୁଲ ଏକ ।

ଚାଂ—ମାନେ ?

ବେଗୁ—ତୁହେଁ—ମିଃ ଦାସ ଅଉ ଚାଂପତି ସାହେବ ମୁହାଁ ମୁହିଁ ଠିଆ ହୋଇଗଲେ, କେହି କାହାର ବେଶ ଭୂଷା ପରଖି ଦେଖିବାକୁ ଅଇନା ଲୋଡ଼ିବେ ନାହିଁ, ସ୍ୟାର ।

ଚାଂ—(ହସି) ତା ହେଲେ ଯେଉଁ ଅଭିଜାତ୍ୟ ଉତ୍ସବ ଅଛି, ସେଥିରେ ଯୋଗ ଦେଲାଭଳି ଯୋଗ୍ୟ ପୋଷାକ ହୋଇଛି ମୋର ?

ବେଗୁ—କେବଳ ଗୋଟାଏ କଥା ବାକି, ସ୍ୟାର ।

ଚାଂ—କ'ଣ—କ'ଣ ?

ବେଗୁ—ଏହି ଗୋଲାପ ଫୁଲଟି, ସ୍ୟାର !

ଚାଂ—ଉଃ—ବେଗୁରାମ ଘରେ ଖଞ୍ଜି ଦେଲେ, ଅଭିଜାତ୍ୟର ବେଶଭୂଷା ଅଉ କାଇଦା କଂକଣାକୁ Final Touch ଦିଆଯିବ—ଏଇଆ ତ ? ଦେଖ୍, ଦିଅ ।
[ ବେଗୁରାମ ଲଗାଇ ଦେଇ ଫୁଲଟି ଗୋଟାଏ ଖାଲି ବୋତଲ ବଢ଼ାଇ ଦେଲେ ]

ଚାଂ—ଉଃ, ବୋତଲ ବି—ଖାଲି ଯେ ?

ବେଗୁ—ହଁ ସ୍ୟାର । ବୋତଲର ଭିତର ଜିନିଷ ସହିତ ଅପଣଙ୍କ କୌଣସି ସମ୍ବନ୍ଧ ନ ଥାଏ, ସ୍ୟାର ।

ଚାଂ—ବେଗୁରାମ !

ବେଗୁ—Private Secretary, Sir ।—ଅପଣଙ୍କ ଭିତରଟା ନ ଜାଣିଲେ କାମ କେମିତି ଚଳେଇବି ସ୍ୟାର !

ଚଟ୍—ଅଚ୍ଛା, ସେ'ଟା ଥାଉ—ବର୍ତ୍ତମାନ କୁହ କପର ମାନୁଛ ।

ବେଗୁ—ଏଥର, କାଏ ବାଦଷ୍ଟର ସାହେବ, ଅଜ କିଏ ବାଦଷ୍ଟର ସାହେବଙ୍କ ବନ୍ଧୁ—କେହ୍ବ ଚିହ୍ନି ପାରିବେ ନା ।

ଚଟ୍—( ରାଗରେ ) ବେଗୁରାମ !

ବେଗୁ—( ଭୟରେ ) ସ୍ୟାର !

ଚଟ୍—ତୁମେ ଭାରି ବଢ଼ି ବଢ଼ି କଥା କହୁ ଯାଉଚ । ଯାଅ - ବଡ଼ବାବୁ [ସେଲାମ କରୁ କରୁ ବେଗାରାମ ଚାଲିଗଲା—ଚଟପଟୀ କିପରି ଅନ୍ୟମନସ୍କ ହୋଇଗଲେ—"କିଏ ବାରିଷ୍ଟର ସାହେବ, କିଏ ବାରିଷ୍ଟର ସାହେବଙ୍କ ବନ୍ଧୁ, କେହ୍ବ ଚିହ୍ନି ପାରିବେ ନା" ସେହି କଥାର ଯେର ଟାଣି କହିଲେ] ଏମିତି କେଣ ମନୀଷା ବ ନୁହେଁ—ମନୀଷା—[ବଡ଼ ବାବୁ ଠିକ ସେତିକି ବେଳେ ପର୍ଦ୍ଦା ଠେଲି ପ୍ରବେଶ କଲେ ]

ବଡ଼ ବାବୁ—ମନୀଷା ବୋଲିତ ଆମ ଅଫିସରେ କେହ୍ବ ନାହିଁ, ସ୍ୟାର ।

ଚଟ୍—ଆପଣ ଗୋଟିଏ ଗଧ ।

[ ବଡ଼ବାବୁ ଅବାକ୍ ହୋଇ ଚାହିଁ ରହିଲେ ] ବଡ଼ ବାବୁ ! ଆପଣଙ୍କର ଏ ନୂତନ ପୋଷାକ କାହିଁକି ?

ବଡ଼ବାବୁ—ଅଜ ତ କୌଣସି Function ନାହିଁ, Sir ।

ଚଟ୍—ଜାଣନ୍ତି ନାହିଁ, ଅଜ ମୋର ବନ୍ଧୁର ବିବାହ-ସ୍ମୃତି ଉତ୍ସବ ?

ବଡ଼ବାବୁ—ଜାଣେ ସ୍ୟାର । ହେଲେ ମୋତେ କିମ୍ବା ଆମର ଅଫିସ ଷ୍ଟାଫ୍ କାହାରକୁ ତ ନିମନ୍ତ୍ରଣ ନାହିଁ ସେ ଉତ୍ସବରେ ।

ଚଟ୍—ନିମନ୍ତ୍ରଣ ଯଦି ନାହିଁ, ତେବେ ଏଇଠାରେ ଉତ୍ସବର ବ୍ୟବସ୍ଥା କଲେ ନାହିଁ କାହିଁକି ? ଜାଣନ୍ତି—ଏହି

ନୂତନ ଅଫିସ ଘରର ମୂଳଦୁଆ ପଥରରେ କଣ ଲେଖା ଅଛି ?

ବଡ଼ବାବୁ—ଜାଣେ ସ୍ୟାର—"ବନ୍ଧୁସ୍ମୃତି" ।

ଚହ୍—ଆଜି ସେହି ବନ୍ଧୁର ବିବାହ-ସ୍ମୃତି ଉତ୍ସବ—ଅଉ ଅଫିସ ନିରୁତ୍ସାହ ହୋଇ ବସିଛନ୍ତି ?

ବଡ଼ବାବୁ—ସେମିତି କୌଣସି Standing order ତ ନାହିଁ ସ୍ୟାର ।

ଚହ୍—ଆପଣଙ୍କର ବୁଦ୍ଧି କ'ଣ ନଥିଲା ? Note submit କରି ପାରିଥାନ୍ତେ । ଯାଆନ୍ତୁ, ଉତ୍ସବର ଆୟୋଜନ କରନ୍ତୁ ।
[ ବଡ଼ବାବୁ ନମସ୍କାର କରି ଯାଉ ଯାଉ ଫେରି ଆସ ]

ବଡ଼ବାବୁ—କେତେ ଟଙ୍କା ସେଥିପାଇଁ ମଞ୍ଜୁର କରୁଛନ୍ତି, ସ୍ୟାର ?

ଚହ୍—ଅଃ । କାହାକୁ ଅପଦାର୍ଥ ଆପଣ—ଯେତେ ଲାଗିବ । (ବଡ଼ବାବୁ ଚାଲି ଯାଉଥିଲେ ) ବଡ଼ବାବୁ—

ବଡ଼ବାବୁ—ସ୍ୟାର ;

ଚହ୍—ଆମର ଅଫିସର ସମସ୍ତେ ନୂଆ ପୋଷାକ ପିନ୍ଧି ଉତ୍ସବରେ ଯୋଗ ଦେବେ ।
[ ବଡ଼ବାବୁ ଅବାକ୍ ହୋଇ ଚାହିଁ ରହିଲେ ]

ଚହ୍—ଚାହିଁ ରହିଲେ କଣ ? ଅଫିସ ଚୁଲେଇବ ସବୁ ଖର୍ଚ୍ଚ ।

ବଡ଼ବାବୁ—ବହୁତ ଟଙ୍କା ଲୋଡ଼ା, ସ୍ୟାର ।

ଚହ୍—ଯେତେ ଟଙ୍କା ଲୋଡ଼ା ହେଉ—ଏହା ମୋର ବନ୍ଧୁର ବିବାହ ସ୍ମୃତି ଉତ୍ସବ—ଏହା କଥାଟି କେବଳ ଧିଆନ ରଖିବେ ।

ବଡ଼ବାବୁ—ଏଇଟା ଅଯଥା ଖର୍ଚ୍ଚ, ସ୍ୟାର ।

ଚନ୍ଦ୍ର—ହବୁଛନ୍ତି, ଅପଥା ଖର୍ଚ୍ଚ—ପ୍ରତିଷ୍ଠାନ ଧ୍ୱଂସ ହୋଇଯିବ । କିନ୍ତୁ ବଡ଼ବାବୁ, ଅଦର୍ଶକୁ ଯେନି ପ୍ରତିଷ୍ଠାନ—ପ୍ରତିଷ୍ଠାନକୁ ଯେନି ଅଦର୍ଶ ନୁହେଁ । ଅଜି ସେହିପରି ଗୋଟାଏ ଅଦର୍ଶ ପ୍ରତିଷ୍ଠାର ଦିବସ । ବିବାହ ଧର୍ମକୁ ଅବହେଳା କରିଥିଲେ ଗୋଟିଏ ବିଶିଷ୍ଟ ଦମ୍ପତି—ସେହି ଅବହେଳାର ହେବ ଅଜି ଅବସାନ । ଏହାଠାରୁ ବଳି ଅନ୍ୟ ଅନନ୍ଦର କଥା କଣ୍ଟ ଅଛି କି ? "ବିବାହ ଧର୍ମ ସାର୍ଥକ ହେବ" – ଏହି ଉଦ୍ଦେଶ୍ୟ ଯେନି ଚଢ଼ା "ବିବାହ-ପଣ-ନିବାରଣୀ ସଭା ପ୍ରତିଷ୍ଠାନ" ପକ୍ଷେ ଏହା କଣ କମ ଗୌରବର କଥା ? ଅପଣ ଯା'ନ୍ତୁ, ସମସ୍ତ ବ୍ୟବସ୍ଥା କରନ୍ତୁ । ( ବଡ଼ବାବୁ ଗୁଲିଗଲେ )

ଯା—ଅତି ଅନନ୍ଦରେ ଭୁଲିଗଲି ଅସଲ କଥାଟି (Calling Bell ବଜାଇଲେ )

[ ବେୟାରା ପ୍ରବେଶ କଲେ – ଅଧାଖିଅର ଗାଲ ]

ବେୟା—ସ୍ୟାର ।

ଚନ୍ଦ୍ର—ଶେଠଜୀ ଅସିଛନ୍ତି ?

ବେୟା—Sir.

ଚନ୍ଦ୍ର—ଏତେବେଳଯାଏ ଖବର ଦେଇ ନାହିଁ କାହିଁକି ?

ବେୟା—ହୋ ସ୍ୱମ ସ୍ୱମ ଜୀ ।

[ ପ୍ରବେଶ କଲେ ଶେଠଜୀ—ସ୍ଥୂଳକାୟ—ଗୋଟାଏ ମୋଟା ହିସାବ ଖାତା କାଖରେ ଜାକିଥାନ୍ତି ]

ଶେଠଜୀ—ସ୍ୱମ ସ୍ୱମ, ଚନ୍ଦ୍ରପତି ସାହେବ ।

ଚନ୍ଦ୍ର—ସ୍ୱମ ସ୍ୱମ ଶେଠଜୀ ।

ଶେଠଜୀ—ଲେକିନ ମୋତେ କାହିଁକି ଡକାଇଲ ସାବ ? ନୂଆ କୁଛ୍ କାରବାର ଉରବାର ଖୋଲୁଛ ?

ଚଟ୍—ଖୋଲିବାର ମତ୍‌ଲବ ଅଛି ବୋଲିତ ଶେଠଜୀଙ୍କୁ ଡାକୁଛି ।
ଶେଠଜୀ—ଲେକିନ ସମଝ ଜମକ କରଣୀ ନୟାକାରବାର, ସାବ ।
ହଁ, ବଜାର ଭିତ୍ ମାନ୍ଦା ଅଛି ।
ଚଟ—ଅନେନ: ବଜାର ତ ଖୁବ୍ ତେଜ ଚାଲୁଛି, ଶେଠଜୀ ।
ଶେଠଜୀ—ହଁ ସାବ—ଲେକିନ ଓ ବଜାର ବିଲକୁଲ ଠିକ ଅଛି—
ଲେକିନ ଚଟପଟି ସାବ ଚିନେମା କାରବାର ନା କରୁଛି ।
ଚଟ—ହଁ ଶେଠଜୀ, ସେଇ କାରବାର କରିବି ବୋଲି ମନେ
କରୁଛି ।
ଶେଠଜୀ—ଲେକିନ ସିନେମା କାରବାର କରବ ଚଟ୍‌ପଟି ସାବ—
ହା: ହା:—ଅରେ ରାମ ରାମ...
ଚଟ—ହସିଲ ଯେ ?
ଶେଠଜୀ—ହସିବ ନାହିଁ ?—ଲେକିନ ମାଇକଣା ଲେକ ଦରକାର ।
ଚଟ୍—ମାଇକିନା ନ ହେଲେ କେଉଁ କାରବାର ଚାଲୁଛି
ଶେଠଜୀ ?
ଶେଠଜୀ—ଲେକିନ ଓ ବାତ୍ ବିଲକୁଲ ଠିକ୍ ସାବ । କଲିକତାରେ
ମାଇକଣା ପୁଲିସ ହାମକୁ ଥରେ ଯେଉଁ ପରଶାନ କଲା—
ଟାଲିଗଞ୍ଜ ବସ୍‌ରେ—
ଚଟ—କାହିଁକି ?
ଶେଠଜୀ—"ମାଇକଣାଙ୍କ" Seatରେ ବସିଥିଲି ବୋଲି ।
ଚଟ—Ladies only ରେ ବସିଥିଲେ ?—ହା—ହା—ହା
(ହଠାତ୍ ରହିଗଲେ ପୂର୍ବ କଥା ମନେ ପଡ଼ିବାରୁ)
ଶେଠଜୀ—ଲେକିନ ଏକ ବାତ୍ ଅଛି ଚଟପଟି ସାବ ।
ଚଟ—କ'ଣ ?
ଶେଠଜୀ—New find ନେଇ ହୋନେସେ ଛବି ବିଲକୁଲ
ବଢ଼ିଆ ।

ଚଟ—New find କ'ଣ, ଶେଠଜୀ ?

ଶେଠଜୀ—(ହସି) ଲେକିନ, ସାହେବ କ୍ୟା ସମଜେଙ୍ଗେ--ନୟା ନୟା ଯବାନୀ—ଯ୍ୱାସା—ଏଇସା କାନନକା ନାକ—ଏଇସା ସୁରେୟାଙ୍କା ଆଁଖ—କାମିନୀକା, ବଦନ—ରେହାନାକା ଛଟକ—ଅଓର କୁକୁ କି ନାଚ ।

ଚଟ—ମୋର ନଜରରେ ସେପରି ଗୋଟିଏ Find ଅଛି, ଶେଠଜୀ ।

ଶେଠଜୀ—ଲେକିନ ନାଚ ଗାନା ଜାନ୍‌ତା ?—ଗାନା ନେହି ହୋନେସେ ହର୍ଜା ନେହିଁ ସାବ୍, Play Back ସେ ହୋଗା । ଲେକିନ ନାଚ ତୋ—

ଚଟ—ନାଚରେ ସେ All India ରେ ଫାଷ୍ଟ, ଶେଠଜୀ ।

ଶେଠଜୀ—ହାଁ—ଲେକିନ ମାଲୁମ ହୋଗିୟା—ଛନ୍ଦା ଦେବୀ ?— ଲେକିନ ବାରିଷ୍ଟର ସାବ କନ୍‌ଭୋ ଗ୍ଲେଡ୍ଜେଗା ନେହିଁ । ବଡା ଅପ୍‌ଶୋଷ, ଚଟ୍ଟପଟି ସାବ—ଅପ ବାରିଷ୍ଟର ସାବକା ଦୋସ୍ତ—ବାରିଷ୍ଟର ସାବକା ଏସା ଖୁବ୍‌ସୁରତ ଔରତ୍—କ୍ୟା ଉନ୍‌କା ନାମ ?—ହାଁ ହାଁ,ମନୀଷା ଦେବୀ—

ଚଟ୍ଟପଟି—ଛାଡନ୍ତୁ ସେ କଥା, ଶେଠଜୀ । ଆମର କାମର କଥା ହଉ । ଆପଣ ଆଜି ବାରିଷ୍ଟର ସାହେବଙ୍କ ଘରକୁ ଆସୁଛନ୍ତି ?

ଶେଠଜୀ—ଦାଓତ୍ ହୈ, ଲେକିନ ଓହ ବାତ୍‌ସେ ହାମାର ଯାନେକା ଇରାଦା ନେହି ।

ଚଟ୍ଟପଟି—କାହିଁ, ଛନ୍ଦା ଦେବୀ ଆଜି ଆସିବେ ସେଠାକୁ, ନାଚିବା ପାଇଁ ।

ଶେଠଜୀ—ନାଚକା Programme ହ୍ୟାୟ ?—ତବ୍ ତୋ ଜରୁର ଆଏଙ୍ଗେ—

ଚନ୍ଦ୍ରପତି—ସେଇଠି Contract ଲେଖା ପଢ଼ା ହୋଇଯିବ ।

ଶେଠଜୀ—ଜ ରୁର୍—ଲେକିନ୍ ଏକ ବାତ୍, ସା'ବ ।

ଚନ୍ଦ୍ରପତି—କ'ଣ ?

ଶେଠଜୀ—ନାଚଵା ଡାଂସ ନେହିଁ କରେଗା—କିମତ୍ ବଢ଼୍ ଯାଏଗା । Business କା ଖିଅଲ୍ ରଖେନା—ହମ୍ ହମ୍ ।

(ପ୍ରସ୍ଥାନ)

ଚନ୍ଦ୍ରପତି—ହମ୍ ହମ୍—Business ? ହା—ହା—ହା—ମୋର Business, ବନ୍ଧୁର ଜୀବନ-ପଥରୁ ଛଡ଼ା ଦେବାଙ୍କର ଅପସାରଣ । [ ଏତିକି ବେଳେ ଟେଲିଫୋନ ଘଣ୍ଟି ବାଜିଲା ]

Hallo, କିଏ ? ଛଡ଼ା ଦେବୀ ?—ହଁ, ମୁଁ ଚନ୍ଦ୍ରପତି । ନମସ୍କାର, ନମସ୍କାର । କ'ଣ ସ୍ଥିର କଲେ ?—ରାଜି ? ଅଭିନନ୍ଦନ—Congratulation ।...ହଁ ହଁ, ଶେଠଜୀ ବର୍ତ୍ତମାନ ଅସିଥିଲେ ।...ଏଇମାତ୍ର ଚାଲିଗଲେ ।...ହଁ, ତାଙ୍କର ତରଫ—ଖୁବ୍ ସୁଯୋଗ ।...ହଁ ହଁ, ମୋଟା terms—ଅଦୌ ଭାବିବେ ନା ।...ଏଁ, ମୋ ପ୍ରତି ଏତେ ବିଶ୍ୱାସ ? ଧନ୍ୟବାଦ—ଧନ୍ୟବାଦ । କ'ଣ, କଣ କହୁଛନ୍ତି ? ହୋ—ହୋ—ହୋ—ମୁଁ ହେବି Hero ଅର ଅପଣ Heroine—ଠିକ୍ କହୁଛନ୍ତି—ବର୍ଷକ ତଳେ ମୁଁ ଏହି ପ୍ରସ୍ତାବ କରିଥିଲି, ମନୀଷା ଦେବୀଙ୍କ ବୈଠକ ଖାନାରେ—ଏଥର ସେହି ପ୍ରସ୍ତାବ କପର ରୂପ ପାଇବ, ତାର ବାଟ ବି କରିବ, ସେହି ମନୀଷା ଦେବଙ୍କ ବୈଠକ ଖାନାରେ । କ'ଣ, କ'ଣ କହୁଛନ୍ତି ?—ଜୀବନରେ ଯାହା ହେବ, ତାର ସୂତ୍ରପାତ ହେବ ଅଭିନୟରେ ।(ଫୋନ ମୁହଁକୁ ଚୁପି ଧରି)

ସ୍ପର୍ଦ୍ଧା ତ କମ ନୁହେଁ—(ପୁଣି ଫୋନ୍‌ରେ ହସି ହସି) ହେଲ୍
—ଏଁ ଏଁ, ମନୀଷାର ହାର ? କ'ଣ ହୋଇଛି—କ'ଣ ?
ଅଟକି ଗଲେ ଭାଙ୍ଗିବ ? Hallo ! Hallo !—Phone
ଛାଡ଼ି ଦେଇଛି—ଯେତାନୀ ! ମନୀଷାର ହାରକୁ ଚୋର୍—
ଡେକବ କ'ଣ ? ନା—ନା—ମୁଁ ସେ ହାରର ମର୍ଯ୍ୟାଦା
ଲାଗି କରିବି ଅଭିନୟ—ସେହି ଅଭିନୟରେ ମୁଁ ହେବି
ନାୟକ, ଛନ୍ଦା ହେବ ନାୟିକା ! ତା' ପର, ତା' ପର—
ଛନ୍ଦା ସହିତ ଛନ୍ଦ ମିଶାଇ ନାଚିବି ମୁଁ, ସେହି ପ୍ରଳୟର
ତାଣ୍ଡବ ନୃତ୍ୟ—ଥେ ଥେ ତାଥା ଥେ—



## ପ୍ରଥମ ଦୃଶ୍ୟ

[ ପର୍ଦ୍ଦା ଖୋଲି ଦେଲେ, ସୁସଜ୍ଜିତ ବୈଠକଖାନା ଦେଖାଯିବ । ମନୀଷା ଓ ଗୀତା ପ୍ରବେଶ କଲେ—ଗୀତାର ଖାଣ୍ଟି ଦେଶୀ ଓ ମନୀଷାର ଦେଶୀ ବିଦେଶୀ ମିଶାମିଶି ପୋଷାକ । ଅଦୂରରେ ନହବତ୍ ବାଜୁଥିଲା, ଘଟଣାର ପରିସ୍ଥିତି ଅନୁସାରେ—କେତେବେଳେ ଶ୍ରୁତିଗୋଚର ହେଉଥିଲା, କେତେବେଳେ ବା ହେଉ ନ ଥିଲା । ]

ଗୀତା—ତୁ ଭାରି shy, ମନୀଷା । ଏତେ ଲାଜ କଲେ ଚଳେ ?

ମନୀଷା—କାହିଁ ପାଇଁ, କହ ତ ?

ଗୀତା—ହେଲେ, ଆଜି ତୋର ବିବାହ-ମୂହୂର୍ତ୍ତ ଉତ୍ସବ—ଏ କଥା ଭୁଲି ଯିବୁ ନା ।

ମନୀଷା—ସ୍ୱା ବୋଲି ମୋତେ ଏମିତି ସୁଅଙ୍ଗ ସଜେଇବାର ମାନେ ?

ଗୀତା—ତୁ ନବ ଅଭିଜାତ୍ୟ ଧରଣରୁ ଯେଉଁ ବେଶଭୂଷା ଖାପିବ ତା ଛଡ଼ା ତ ଅଥବା କଣ୍ଟ କରି ହୋଇନାହିଁ ।

ମନୀଷା—କିନ୍ତୁ ତୋର ଏଇ ବେଶଭୂଷା, କି ସରଳ—କି ସୁନ୍ଦର ।

ଗୀତା—ତୋର ସରଳ, ସୁନ୍ଦର ମନ ଆଜି ଏକଥା କହୁଛି—ତା' ମୁଁ ବୁଝୁଛି, ହେଲେ—

ମନୀଷା—ହେଲେ, ଆଜି କ'ଣ ମୋର ମନକୁ ମାନିଲା ଭଳି ପୋଷାକ ମୁଁ ପିନ୍ଧିବି ନାହିଁ ?—ଏହାର କାରଣ ?

ଗୀତା—ଆତ୍ମାକୁ ଚିହ୍ନିଲେ ଦେହର ପ୍ରଶ୍ନ ଥାଏନା, ଭଉଣି—

ମନୀଷା—କିନ୍ତୁ ତୁ ଯେପରି ଦେହର ପ୍ରଶ୍ନକୁ ବଡ଼ କରି ଦେଉଛୁ ।

ଗୀତା—ମୁନିମାନେ କହି ଯାଇଛନ୍ତି ପରା, ଶରୀରମାଦ୍ୟଂ ଖଳୁ ଧର୍ମ ସାଧନଂ—

ମନୀଷା—ତାର ମାନେ, ଧର୍ମ ସାଧନ ପାଇଁ ଯେପରି ଶରୀରର ଯତ୍ନ ଆବଶ୍ୟକ, ବିବାହ ଧର୍ମ ପାଇଁ ସେହିପରି ଅନ୍ତରର ଯତ୍ନ ଆବଶ୍ୟକ···

ଗୀତା—ଅନ୍ତର ବି—

ମନୀଷା—କ'ଣ ?

ଗୀତା—ମନ ଠିକ୍ ଥିଲେ କାଠିଆ ଗଙ୍ଗା ।

ମନୀଷା—ଏ ଭଳି ନିର୍ଲିପ୍ତ ଭାବ ପାଇଁ ଦରକାର, ଗୀତାର ପ୍ରେରଣା

[ ଗୀତାକୁ ଖୁଡ଼ୀ ପାଖ ଚାଲି ଯାଉଥିଲେ, ଏହି ସମୟରେ ଚନ୍ଦ୍ରପତି ସାହେବ ପ୍ରବେଶ କଲେ ]

ଚନ୍ଦ୍ରପତି—ପଳାଇ ଯିବେ ନାହିଁ, ମନୀଷା ଦେବୀ । ମୁଁ ଆଜି ବାଘରେ ଆସି ନାହିଁ—ଆସିଛି ଟ୍ୟାକ୍ସିରେ । ( ମନୀଷା ଚାଲି ଯାଉଥିଲେ )

ଗୀତା—ମନୀଷା ! ( ଝାଣି ଯେପରି ଆସିଲେ ଭିତରୁ ) ତୋତେ ନେଇ ଆଉ ପାର ହେବ ନାହିଁ ଦେଖୁଛି; ଘରେ ତୋର ନିମନ୍ତ୍ରିତ ଅତିଥି ପରା—

ଚନ୍ଦ୍ର—ଠିକ୍‌କଲେ, ନମସ୍କାର ଜଣାଉଛନ୍ତି ଗୀତା ଦେବୀ—ମନୀଷା ଦେବୀ ବୁଝନ୍ତୁ ।

ମନୀଷା—ଗୀତା ।

ଗୀତା—ତୋର ମୁହଁର କଥା ସମ୍ଭବତ ମନର ଯୋଗ ନ ଥିବ ଜାଣି ନମସ୍କାର କରି ଅଛେଁ ।

ମନୀଷା—ତୁ ଆଉ ମୋତେ ବଞ୍ଚିଥୋଇ ଦେବୁନାହିଁ, ଗୀତା ! ( ଚୁଲି ଯାଉଥିଲା )

ଗୀତା—Mr. Dasଙ୍କ ପରମ ବନ୍ଧୁ, ଆଜି ପତ୍ର ଜନରେ ବନ୍ଧୁ-ସମ୍ବାଦର କରିବାକୁ ଭୁଲିଯିବୁ ନାହିଁ, ମନୀଷା ।(ଚୁଲିଗଲେ)

ଚନ୍ଦ୍ର—ମୋର ଅପରାଧ ମାର୍ଜନା କରନ୍ତୁ ।

ମନୀଷା (କ୍ରୋଧରେ) ଆପଣଙ୍କର ଅପରାଧ ଅମାର୍ଜନୀୟ ।

ଚନ୍ଦ୍ର—ସେଥିରେ ମୁଁ ଭାରି ଖୁସି—ଭାରି ଆନନ୍ଦିତ, ମନୀଷା ଦେବୀ ! ମୋ ପ୍ରତି ଏହିପରି ଧାରଣା ଯେମିତି ଆପଣଙ୍କ ମନରେ ସଦାବେଳେ ବଦ୍ଧମୂଳ ଥାଏ, ଏତିକି ମିନତି । ଆସୁଛି—ନିମନ୍ତ୍ରିତ ଅତିଥିମାନଙ୍କର ଅସୁବିଧା ଆଉ ବିଳମ୍ବ ନାହିଁ । ଅଭ୍ୟର୍ଥନା ଭାର ମତେ ତୁଲାଇବାକୁ ହେବ, ମୁଁ ଯାଏଁ ।

ମନୀଷା—ଅପେକ୍ଷା କରନ୍ତୁ ।

ଚନ୍ଦ୍ର—କହନ୍ତୁ—

ମନୀଷା—ଆପଣ ଏପରି କହୁଥିବାର କାରଣ ?

ଚନ୍ଦ୍ରପତି—ମୋର ଗୋଟାଏ ସାମୟିକ ଭୁଲ ଯୋଗୁଁ Mr Dasଙ୍କ ପ୍ରତି ଆପଣଙ୍କର ଯେଉଁ ଭୁଲ ସନ୍ଦେହ ହୋଇଥିଲା, ତାହା ଆଉ ନାହିଁ—ଏକଥା ଜାଣି ମୁଁ ଭାରି ଆନନ୍ଦିତ । —ଆସୁଛି, ଦେବୀ—

ମନୀଷା – ସାମାନ୍ୟ ଅପେକ୍ଷା । "ମୋର ଗୋଟାଏ ସାମୟିକ ଭୁଲ" —ଏପରି କହିବାର ଅର୍ଥ ?

ଚନ୍ଦ୍ର—Mr Das ମୋତେ ଦୁଇ କିସ୍ତିର premium ଟଙ୍କା ଦେଇଥିଲେ । ମୁଁ ତାହା ଅଫିସରେ ଜମା ଦେବାକୁ ଭୁଲି ଯାଇଥିଲି । ଅଫିସର ବଡ଼ବାବୁ ଟଙ୍କା ଜମା ନ ପାଇବାରୁ ବେରସ୍ତମଙ୍କୁ ସେଇ କଥା ଜଣାଇ ଥିଲେ । ଏହାର ଫଳରେ ଆପଣ ଦୁଇଜଣ—ସ୍ୱାମୀ ସ୍ତ୍ରୀଙ୍କ ଭିତରେ ସୃଷ୍ଟି ହେଲା, ସେଇଟା ଏ ଭୁଲ ଧାରଣା—ଆଜି ପ୍ରଳୟ କାଣ୍ଡର ସୂଚନା ।

ମନୀଷା—ଆପଣ ସେଦିନ ତା' ହେଲେ ସେହି ରସିଦ ଦୁଇ ଖଣ୍ଡ ଦେବାକୁ ନିଜେ ଧାଇଁ ଆସିଥିଲେ ଏଠାକୁ ?

ଚନ୍ଦ୍ର – ଅଫିସରୁ ଖବର ପାଇବା ମାତ୍ରେ, ଭୁଲର ପ୍ରାୟଶ୍ଚିତ୍ତ କରିବାକୁ ହିଁ, ମନୀଷା ଦେବୀ –

ମନୀଷା—ଆଜି ମୁଁ ସେହି ଭୁଲ-ପ୍ରାୟଶ୍ଚିତ୍ତର ବିନିମୟରେ କିଭଳି ପୁରସ୍କାର ଦେଉଛି, କହନ୍ତୁ ତ ? ହା—ହା—ହା

ଚନ୍ଦ୍ର – ପୁରସ୍କାର ?—ଦେଉଛନ୍ତି ଆପଣ ?

ମନୀଷା – Mr. Dasଙ୍କ ହାତରେ, ବନ୍ଧୁଙ୍କର ପ୍ରୀତି-ଉପହାର ଫେରାଇ ଦେଇ—

ଚନ୍ଦ୍ର—କ'ଣ କହୁଛନ୍ତି, ମନୀଷା ଦେବୀ ?

ମନୀଷା—ଦେଖୁଛନ୍ତି ଅଜି ଅପଣଙ୍କର ସେହି ପ୍ରୀତି-ହାରଟି ମୋର ଗଳାରେ ?

ଚନ୍ଦ୍ର—ମନୀଷା ଦେବୀ–

ମନୀଷା—ମୁଁ ଜାଣେ, ଅପଣ ଅନ୍ତରରେ ଖୁବ୍ ଆଘାତ ପାଇଛନ୍ତି । ଆପଣ ଆପଣଙ୍କର ଭୁଲର ପ୍ରାୟଶ୍ଚିତ୍ତ କରିଛନ୍ତି, ମୁଁ ଆଜି ମୋର ଭୁଲର ପ୍ରାୟଶ୍ଚିତ୍ତ କରିବି । ଧରନ୍ତୁ, ହାରଟି ଧରନ୍ତୁ—ଦିନେ ଉପହାର ଦେଇଥିଲେ, କିନ୍ତୁ ଆଜି

ମୁଁ ମାଗି ନେଉଛି । ଦଶଅନ୍ତୁ—ମୁଁ ଜାଣେ କଷ୍ଟପ୍ତ ଅପଣ
ସାଙ୍ଗରେ ଅଣିଥିବେ । ଅଜ ମୁଁ ତାହା କାଂସଙ୍କୋଚରେ
ଟାଣିଣ ଭରିବ—ଅଜ ଭୁଲି ବୃଝା ବୁଝିର ଅବସାନ
ଦନ—ଅଜ ମିଳନର ଦନ—ଅଜ ପ୍ରୀତ-ଉତ୍ସବର ଦନ ।

ଚନ୍ଦ୍ର—[କିପରି ଅଭିଭୂତ ହୋଇ ପଡ଼ିଲେ—ତାଙ୍କୁ ପ୍ରକୃତିସ୍ଥ ହେବାକୁ ଅଳ୍ପ ସମୟ ଲାଗିଲା ]
ଉତ୍ତ ଉଠିଲେ] ହଁ ହଁ, Mr Das ମୋତେ ସେହି ହାରଟି
ଦେଇଥିଲେ—ମୁଁ ଅଣିବାକୁ ଭୁଲି ଯାଇଛି,ମନୀଷା ଦେବୀ !
ଓଃ କି ଭୁଲମନ ମୋର । ମୋତେ ମାଫ କରିବେ—
ମୁଁ ଏହିକ୍ଷଣି ନେଇ ଅସୁଛି ।

ମନୀଷା—କଷ୍ଟ ଦେଲି ଅପଣଙ୍କୁ—

ଚନ୍ଦ୍ର—ନା ନା, ଏ କି କଥା—

ମନୀଷା—ବେଶ୍, ଅସନ୍ତୁ । ଗୀତା ଦେବୀ ଅପଣଙ୍କ ଗୃହରେ ଅତିଥି
ଅଭ୍ୟର୍ଥନାର ଭାର ଦେଇଛନ୍ତି—ଅପଣ ନ ଆସିବା ପର୍ଯ୍ୟନ୍ତ,
ସେ ଭାର ମୁଁ ତୁଲାଇ ନେଉଛି ।

ଚନ୍ଦ୍ର—ଧନ୍ୟବାଦ [ ନମସ୍କାର କରି ଚାଲିଗଲେ ଓ ଅନ୍ୟଅଡ଼ୁ ପ୍ରବେଶ
କଲେ ବେଗୃହମ— ହାତରେ ଥିଲା ଗୁଚ୍ଛାଏ ଫୁଲମାଳ ]

ମନୀଷା—ବେଗୃହମ ।

ବେଗୃ—Madam ।

ମନୀଷା—ବାଜା କାହିଁ ?

ବେଗୃ—ଅପଣତ ବଜାଇବାକୁ ମନା କରିଥିଲେ, Madam ?

ମନୀଷା— ଯାଅ, କହ ବଜାଇବାକୁ—ଅତିଥିମାନଙ୍କର ଅସିବା
ସମୟ ହୋଇଗଲାଣି ।

ବେଗୃ—ଅତିଥି ଅଭ୍ୟର୍ଥନା କରିବେ ପରା, ଅମ ସାହେବ ? ସେ
ଗଲେ କୁଅଡ଼େ ?

ମନୀଷା—ମୁଁ କହୁଛି ତାଙ୍କ ବଦଳରେ—ତୁମେ ଯାଅ ।
( ଗୁଲିଗଲେ )

ବେଗୁ—ହୁପ୍ ହୁପ୍ ହୁର୍‌ରେ – ହୁପ୍ ହୁପ୍ ହୁର୍‌ରେ [ ଏମିତି କହି କହି ବୁଲି ଗଲେବେଳେ ଶେଠଜୀ ଅସି ପଡ଼ିବାରୁ ତାଙ୍କ ଉପରେ ଅଜାଡ଼ି ହୋଇ ପଡ଼ିଲେ ]

ଶେଠଜୀ—ରାମ ରାମ ।

ବେଗୁ – ଖାଲି ରାମ ନୁହେଁ ଶେଠଜୀ, ମୋର ନାମ ବେଗୁରାମ ।

ଶେଠଜୀ – ଲେକିନ, ସାବ୍ କାହିଁ ବେଗୁରାମ କି ?

ବେଗୁ—ସାହେବାଣୀ ଅଛନ୍ତି । ଲେକିନ ଧାବର ହେବେ ନାହିଁ ।

ଶେଠଜୀ—ଲେକିନ୍ – ଚଉପଟି ସା'ବ ତୋ ସାଦ କିଅ ନେହି – ଜାଣିଛି ।

ବେଗା —ପ୍ରକୃତି-ସାହେବାଣୀ ।

ଶେଠଜୀ—ହୋଃ, ହୋଃ, ହୋଃ—ବଦଲିଅ-ସାହେବାଣୀ—
[ ଠିକ ସେହି ସମୟରେ ମନୀଷା ପ୍ରବେଶ କଲେ ]

ମନୀଷା—ରାମ ରାମ—ଅଇସ୍ରେ ଅଇସ୍ରେ, ଶେଠଜୀ ।

ବେଚାରାମ—[ ଭୁଲି ଯାଇଥିଲେ ଫୁଲ ଦେବାକୁ···ଫେରିଅସି ] ଛିଡ଼ାଏ ଠିଆ ହୁଅ, ଲେକିନ···[ ଯେତେ ଫୁଲ ପିନ୍ଧାଇ ଦେବାକୁ ଗଲେ, ତା ସବୁ କ୍ଷେତ ଥିବାରୁ ଛିଣ୍ଡି ଯାଉଥାଏ ]

ମନୀଷା—ଓ୍ୟାମ ଫୁଲ—ଅସନ୍ତୁ, ଶେଠଜୀ (ମନୀଷା ଓ ଶେଠଜୀଙ୍କ ପ୍ରସ୍ଥାନ)

ବେଚାରାମ—ଓ୍ୟାମ ଫୁଲ ( କଡ଼ାଇ ଦେଲେ ଫୁଲ ଗୁଡ଼ାକ )—ନଷ୍ଟ ହେବ କାହିଁକି ! ମୁଁ ପିନ୍ଧି ନିଏ (ପିନ୍ଧିବାକୁ ଲାଗିଲେ)

ମନୀଷା—(ନେପଥ୍ୟେ) ବେଚାରାମ············

ବେଚାରାମ—ମେଡ଼ାମ···(ପ୍ରସ୍ଥାନ)

[ Mr Das ଓ ମନୀଷା ପ୍ରବେଶ କଲେ ପରସ୍ପରର ବିପରୀତ ଦିଗରୁ ]

ମନୀଷା—ମିଃ ଦାସ ଏକା ଯେ—ଛନ୍ଦା କାହିଁ ?

ମିଃ ଦାସ—(ଘଣ୍ଟା ଦେଖି) ଅଜ୍ ଟାଇମ ନାହିଁ—ସେ ମେକଅପ୍ ରୁମରେ ।

ମନୀଷା—କିଛି ମନେ କରିବ ନାହିଁ ତ ସେ ଦିନ ଭଳି—ବାନ୍ଧବୀ ସଙ୍ଗେ ବାନ୍ଧବୀ ଦେଖା କରିବ, ଏ କଥା ହେଲା ନାହିଁ ବୋଲି ?

ମିଃ ଦାସ—ସେ ଭୁଲ ଥିଲେ—ସେ ତ ଅଦୌ ଆସି ନ ଥାନ୍ତେ—ବରଂ ତୁମର ସୌଜନ୍ୟ ଓ ଅଦର୍ଶକୁ ଛନ୍ଦା ଦେବୀ ମାନି ନେଇଛନ୍ତି ।

ମନୀଷା—ସେଇ ଅଦର୍ଶ ବୋଧ ଯୋଗୁଁ ତ ମୁଁ proxy ଦେଉଛି ବନ୍ଧୁ ପାଇଁ ।

ମିଃ ଦାସ—ବେଶ୍ ବେଶ୍—ଅଜିର ମିଳାମିଶା ଦିନରେ ହିଁ ଏଇଯା ଦରକାର—ଅଜା ଓ ଗୀତା ଏଣେ ଅସୁଛନ୍ତି, ମୁଁ ଯାଏଁ ···

( ଶ୍ୟମ କୁଳାଲ ଓ ଗୀତାର ପ୍ରବେଶ )

ଗୀତା—ଠିଅ ହୁଅ, ମିଃ ଦାସ !—ଏଇଠି ଠିଅ ହୋଇଛନ୍ତି ତୁମର ନାତ ନାତୁଣୀ, ଅଜା !

ଶ୍ୟମ—ବାଜା ?—ବାଜା···ବେଶ ବେଶ—ତୋତେ ବର ମିଳୁ ନାହିଁ, କି ମୋତେ କନିଅ ମିଳୁ ନାହିଁ···ଏଇତ ନାତ ନାତୁଣୀ—କଣ କହୁଛ ତୁମେ ?

ମନୀଷା—ନା ହିଁ, ତୁମେ ବାହା ହୋଇ ପଡ଼ ଗୀତାକୁ, ଅଜା ।

ଶ୍ୟମ—ତୁମର ମତ, ନାତ ?

ମିଃ ଦାସ—ମୋର ବି ସେଇ ମତ ।

ରାମ—ବେଶ ବେଶ, ହେଲେ ଏଇଟା ଅଙ୍କ ରୂଡ଼ାର ଯୁଗ—ଗୀତା ତୋର ମତ ?

ଗୀତା—ମୋର ମତ, ତୁମେ ଗୋଟାଏ ଭୂତ ।

ରାମ—ଭୂତ । କାହିଁ ? ହୋଃ—ହୋଃ—ହୋ—ତୋର ସେଇ ଚଉଷଠି ସାହେବ ପରା ?—ଭୂତ ନୁହେଁରେ ସେ ଅଦ୍ଭୁତ—ତାଙ୍କର ମନ ଗୀତାର—ହୋଃ…ହୋଃ…ବେଶ୍ ବେଶ୍ ଅଙ୍କ ସେହି କଥା ସଭାରେ ପ୍ରସ୍ତାବ କରିବ…ତୁମେ ସମର୍ଥନ କରିବ ତ ?

ମନୋଦାସ ଓ } —ହଁ ହଁ—ଆମେ ଦୁହେଁ ମିଶି ସମର୍ଥନ କରିବୁ,
ମନୀଷା } ଅଙ୍କା ।

[ ନେପଥ୍ୟ ଘଣ୍ଟା ରବ ]

ଗୀତା—ତୁମେ ସବୁ କହୁଛ କଣ କୁହତ—ଅଭିନୟ ବେଳ-ହୋଇ ଗଲାଣି—ଦର୍ଶକ ମାନେ ତେଣେ ଉଚ୍ଛନ୍ନ ହେଲେଣି—

ରାମ—ଏଁ, କ'ଣ ?…

ଗୀତା—ଅସ, ତେଣେ ଘଣ୍ଟି ପଡ଼ିଲାଣି—

ରାମ—ଘଣ୍ଟି—ଘଣ୍ଟି ବାଜିଗଲାଣି—ବେଶ୍ ବେଶ୍ ପର୍ବାସ୍ତୁ କଣ ? ମାତାଲ ଭୂତନାଥ ତୋତେ ମଦ ଯୋଗାଇ ଦେବ—ହୋଃ—ହୋଃ—ହୋଃ— —

[ ସମସ୍ତେ ହସିବାକୁ ଲାଗିଲେ—--ଗୀତା ରାମ ଲାଲଙ୍କୁ ଟାଣି ନେଇ ପ୍ରସ୍ଥାନ କଲେ ]



## ଦ୍ୱିତୀୟ ଦୃଶ୍ୟ

[ ଉତ୍ସବ ମଣ୍ଡପ । ନିମନ୍ତ୍ରିତ ବ୍ୟକ୍ତିମାନେ ଉପବେଶନ କରିଥିଲେ — ଛୋଟ ଛୋଟ ଟେବୁଲରେ ନାନାବିଧ ଫଳ ଓ ଆହାରର ସାମଗ୍ରୀ ବଢ଼ା ହୋଇଥାଏ ଏବଂ ତାକୁ ଘେରି ଦୁଇ ତିନି ଖଣ୍ଡ କରି Chair ପଡ଼ିଥାଏ—ଅତିଥିମାନେ ଭୋଜନ କରୁଥାନ୍ତି । ନୃତ୍ୟ ଆରମ୍ଭ ହୋଇ ନ ଥାଏ—ସେମାନଙ୍କ ମଧ୍ୟରେ ଶେଠଜୀ ବସିଥାନ୍ତି ଏକ ପାର୍ଶ୍ୱରେ ଏବଂ ମଧ୍ୟେ ମଧ୍ୟେ ମନକୁ ମନ "ଲେକିନ—ନାଚ ନାଚ" ଏହି ଢଳ ପାଟି ତୁଣ୍ଡ କରୁଥାନ୍ତି । ବେଗୃରାମ ପରିବେଶନ ଓ ତତ୍ତ୍ୱାବଧାନରେ ରତ ଥାଏ । କେହି କେହି ଅତିଥି ଫଳ କିମ୍ବା ସନ୍ଦେଶଟିଏ ପକେଟସ୍ଥ କଲେ, ସେ ତାହା ବାହାର କରି ପାଟିରେ ପକାଇବାକୁ ଇଙ୍ଗିତ ଦେଉଥାଏ – ରାମଦୁଲାଲ ଓ ଗୀତା ବୁଲି ବୁଲି ଅତିଥିଙ୍କ ସଙ୍ଗେ ଆଳାପ କରୁଥାନ୍ତି ]

ଛନ୍ଦା—(ରାମଦୁଲାଲଙ୍କୁ) ଅଜା, ଆପଣ ଏଥର rest ନିଅନ୍ତୁ ।

ରାମ – State ?—ଷ୍ଟେଟ ନାଚ ନାଚୁଣୀମାନେ ବୁଝୁଛନ୍ତି । ମୁଁ ରାମଦୁଲାଲ-ଷ୍ଟେଟକୁ ମୋର ଏକମାତ୍ର ନାତୁଣୀ ମନୀଷା ନାମରେ Will କରି ଦେଇଛି । ଗୀତା ଆଉ ଦାସ ଟ୍ରଷ୍ଟି ।

[ ଛନ୍ଦା ଏକାବେଳେକେ ଅଭିଭୂତ ହୋଇଗଲା । ମୁହଁରୁ ଖାଲି ବାହାରିଲା "Will କରି ଦେଇଛି, Will କରି ଦେଇଛି" ସେତିକିବେଳେ ଘଣ୍ଟା ବାଜିଲା ]

ଗୀତା—ଆସ ଅଜା, ନାଚ ଆରମ୍ଭ ହେବ । ଛନ୍ଦା, ତୁମେ ଆସ । ତୁମର ନାଚ ଏହାପରେ ।

ଛନ୍ଦା— ନାଚ ? ମୁଁ ଅଲ୍ଲ ଦୂରେଇ ପାରିବ ନାହିଁ ।

ଗୀତା—ଖୁବ୍ ପାରିବ । ନୃତ୍ୟର ଯେ ସ୍ରଷ୍ଟା, ସେହି ଯୋଗେଶ୍ୱର ସତ୍ୟ ଶିବ ସୁନ୍ଦରଙ୍କୁ ସଦାବେଳେ ଧ୍ୟାନ, ଅମ୍ବବଳ ପାଇବ । ଅସ ଭଉଣୀ ! ( ଏକ ପ୍ରକାର ଟାଣି ଟାଣି ନେଇଗଲେ )

ମନୀଷା—( ପ୍ରବେଶ କରି ) କାହିଁ ଗଲେ ଚନ୍ଦ୍ରପତି ସାହେବ ? ନ ଫେରିବାର କାରଣ ? ( ଗୁଲିଗଲେ )

[ ଘଣ୍ଟି ପଡ଼ିଲା । ଦର୍ଶକମାନେ—Order, Order—କହୁଥାନ୍ତି—ନୃତ୍ୟଗୀତ ଗୁଲିଲା । ଚନ୍ଦ୍ରପତି କୁନ୍ଦି ବୁଣିବାରେ ପ୍ରବେଶ କଲେ ଓ ଗୃହଅଡ଼କୁ ଲକ୍ଷ୍ୟକରି ଦ୍ରୁତ ଗୁଲିଗଲେ ଏବଂ ଛନ୍ଦା ନାଚୁ ନାଚୁ ଅବଶ ହୋଇ ପଡ଼ିଲେ—ସମସ୍ତେ ଗୋଳମାଳ କରି ଉଠିଲେ—ଯବନିକା ପଡ଼ିଲା ]



ଦୃଶ୍ୟ ପରିବର୍ତ୍ତନ

[ ମିଃ ଦାସ ଗୁଲି ଯାଉଥିଲେ—ଚନ୍ଦ୍ରପତି ଆସି ଦ୍ରୁତ ଭାବରେ ଧରିଲେ ]

ଚନ୍ଦ୍ରପତି—କହ, କ'ଣ ହେଲା ମୋର ହାର ?

ମିଃ ଦାସ—ଛାଡ଼ ଦେ, ଛାଡ଼ ଦେ—

ଚନ୍ଦ୍ରପତି – ହାର ଦେଇଦେ, ଛାଡ଼ି ଦେବା ।

ମିଃ ଦାସ—ହାର ? କି ହାର ?

ଚନ୍ଦ୍ରପତି—ମନୀଷାର ହାର !

ମିଃ ଦାସ—ଜାଣେ ନା—

ଚନ୍ଦ୍ରପତି—ତୁ ଜାଣୁନା ? ତୁ ଗୈରୁ କରୁଛୁ, ମୁଁ ହୋଇଛୁ ଗ୍ରୈର —ତୁ କରଜ କରୁଛୁ ମୁଁ ହୋଇଛୁ କରଜ୍‌ଦାର୍‌—ତୁ ଠକୁଛୁ ମୁଁ ହୋଇଛୁ ଠକ ଜୁଆଗ୍ରୈର ।

ମିଃ ଦାସ—ଆଜି ଏହି ହାର ନେଇ ମୁଁ କରୁଛୁ ଲମ୍ପଟ୍ୟ—ତୁ ହେବୁ ଲମ୍ପଟ ।

ଚନ୍ଦ୍ରପତି—ତାହାହେଲେ, ତୁ ସେ ହାର ଛନ୍ଦାକୁ ଦେଇଛୁ ।

ମିଃ ଦାସ—ଛନ୍ଦାକୁ ?

ଚନ୍ଦ୍ରପତି – ହଁ ଛନ୍ଦାକୁ—ମୁଁ ଆଜ ତା କଣ୍ଠରେ ଦେଖିଛୁ ସେହିପରି ଗୋଟାଏ ହାର ।

ମିଃ ଦାସ—ସେପରି ହାର କ'ଣ ଆଉ ଥାଇ ପରେ ନା ?

ଚନ୍ଦ୍ରପତି – ମୋତେ ଲୁଗୁଇବାର ଚେଷ୍ଟା କର ନା ଦାସ୍‌, ମୁଁ ଜାଣେ ତୁ କେତେ ଜଳକୁ ଖଟିଗଲୁଣି ।

ମିଃ ଦାସ—ମୋ ବିଷୟ ଢେନି ଆଲୋଚନା କରିବାର ଅଧିକାର ତୋର ନାହିଁ ।

ଚନ୍ଦ୍ରପତି – ଅଧିକାର ଅଛି କି ନା, ତୁ ବର୍ତ୍ତମାନ ବୁଝି ପାରିବୁ ନାହିଁ । କାରଣ ତୁ ମୋହରେ ହୋଇଛୁ ଅନ୍ଧ—ମନୀଷା ଭଳି ଝିଅକୁ ତୁ କରୁଛୁ ହତାଦର । ହାର ଫେରାଇ ଦେ, ନଚେତ୍‌ ମୁଁ ମନୀଷା ନିକଟରେ ସବୁ ପ୍ରକାଶ କରିଦେବି ।

ମିଃ ଦାସ—ମନୀଷା କଣ ତୋ କଥା ବିଶ୍ୱାସ କରିବ ? ସେ ଜାଣେ ମୁଁ ତୋତେ ହାର ଦେଇଛି । ତୁ ଏକଥା ସ୍ୱୀକାର କରୁଛୁ ଠିକ୍ । ବର୍ତ୍ତମାନ ଯଦି ଛନ୍ଦା କଣ୍ଠରେ ସେହି ହାର ସେ ଦେଖେ, ତାହା ହେଲେ ତାକୁ ବୁଝିବାକୁ ଡେରି ହେବ ନାହିଁ, ଯେ ତୁ ଏହି ହାର ଛନ୍ଦାକୁ ଉପହାର ଦେଇଛୁ— ମୁଁ ନୁହେଁ ।

ଚଟ୍ପଟି—ଶପ୍ତଭାନ୍ ( ବେକର Collar ଧରି )
ମିଃ ଦାସ—ଛାଡ଼ଦେ, କହୁଛି ।
ଚଟପଟି—ଏତେଦିନ ତୋତେ କ୍ଷମା କରି ଆସିଛି, ଖାଲି ମନୀଷାର ମୁହଁକୁ ଚାହିଁ— କୌଣସି କଥା ମୁଁ ଶୁଣିବାକୁ ଚାହେଁନା— ତୁ ହାତ କଣ କରିଛୁ କହ ? ମାନ ଦୁଇମିନିଟ ସମୟ ଦେଲି—କହ ହାର କେଉଁଠି ?—ଏକ୍—ଦୁଇ ( ପିସ୍ତଲ ବାହାର କରି )
ମିଃ ଦାସ—ଏଁ—ଖୁନ୍ ?
ଚଟପଟି—ହଁ—ଖୁନ୍ କରିବି—ଖୁନ୍ ।
ମିଃ ଦାସ—ଖୁନ୍ ?—କାହାକୁ ?—ମନୀଷା ସହ ଯାଉଛ ?
ଚଟପଟି—ଭୁଲ କରୁଛ ବନ୍ଧୁ—ଭୁଲ କରୁଛ । ନେ—ନେ—ପିସ୍ତଲ ନେ—ତୁ ମୋତେ ମାରିଦେ—ମୁଁ ଅପବାଦ ସହ୍ୟ କରି ପାରିବି ନାହିଁ ।
[ ମିଃ ଦାସଙ୍କ ହାତରେ ପିସ୍ତଲ ଧରାଇଦେଲେ ]
ମିଃ ଦାସ—( ପିସ୍ତଲ ଦେଖାଇ ଚଟପଟି ଆଡ଼କୁ ) ବାହାର ଯା— ବାହାର ଯା, କହୁଛି—
[ ଗୋଟାଏ ଉତ୍ତେଜନାରେ ଛନ୍ଦା ଓ ମନୀଷାର ପ୍ରବେଶ ]
ଛନ୍ଦା—ନା, ଠିଆହୁଅ, Mr. ଚଟପଟି !
ମିଃ ଦାସ—କିଏ ? ଛନ୍ଦା ?
ମନୀଷା—କହ ଛନ୍ଦା, କିଏ ଦେଇଛି ଏ ହାର ?
ଛନ୍ଦା—କହୁଛି—ଆଜି ମୁଁ ଛୁଟି କରିଦେଇ ଆସିଥିଲି— ଏଇଳି ଗୋଟିଏ ବିଶିଷ୍ଟ ଅଭିଜାତ୍ୟ ଅନୁଷ୍ଠାନରେ ବିଶେଷ ଧରଣର ନୃତ୍ୟ ଗୀତ ପ୍ରଦର୍ଶନ କରି ମୋର କଳା ଓ କୃଷ୍ଟି ସାଧନାର ପ୍ରକୃଷ୍ଟ ପରିଚୟ ଦେବି—ମୋର ସୁନାମ

ଶତ ଶତ ମୁଖରେ ଚରମ ପ୍ରଶଂସା-ମୂର୍ଚ୍ଛନା ହୋଇ ଉଠିବ, ସ୍ୱକର୍ଣ୍ଣରେ ଶ୍ରବଣ କରିବି। ମାତ୍ର, ଖାଲି ଏବେ ମୁଁ ମର୍ମେ ମର୍ମେ ଅନୁଭବ କଲି—ମୁଁ ଗାଉଛି, ମୋର କଣ୍ଠରେ ତରଙ୍ଗ ନାହିଁ—ମୁଁ ନାଚୁଛି, ଚରଣରେ ଛନ୍ଦ ନାହିଁ—ମୁଁ ଖେଳୁଛି, ଖେଳରେ ଉନ୍ମାଦନା ନାହିଁ। ଏହାର କାରଣ କଣ ?—ଅନୁସନ୍ଧାନ କରିବାକୁ ଯାଇ ହଠାତ୍ ମୋର ଚେତନା ଆସିଲା, ଗୀତା ଦେବୀଙ୍କୁ ଅନାଇ ଦେଲି—

ମନୀଷା—କି ଚେତନା, ଭଉଣୀ ?

ଛନ୍ଦା—ଚରିତ୍ର। ଚରିତ୍ର ଯାର ନାହିଁ—ତାର ଅସ୍ତିତ୍ୱ ନାହିଁ।

ମିଃ ଦାସ—ଛନ୍ଦା !

ଛନ୍ଦା - ଭ୍ରୂକୁଟୀ ମତେ ବିଚଳିତ କରି ପାରିବ ନାହିଁ, ମିଃ ଦାସ ! - ମନୀଷା! ପ୍ରଭୁ ପ୍ରତ୍ୟୁଷ-ଶର୍ମା, ସମୁଜ୍ଜ୍ୱଳ ଷ୍ଟେଜର ସମ୍ପଦ ବାସନା ଏସବୁ ମୋର ଆଉ ନାହିଁ। ମୁଁ ବାଛି ନେଇଛି—ମୋର ଭବିଷ୍ୟତ ପନ୍ଥା। ଆଜି ସମସ୍ତଙ୍କ ଆଗରେ—ବିଶ୍ୱ ସମ୍ମୁଖରେ, ମୁଁ କନ୍ଫେସ୍ କରି ଦେବି ଆପଣଙ୍କର ସ୍ୱରୂପ—ଜାଲ, ଜୁଆଚୋର, ପ୍ରତାରକ।—

ମିଃ ଦାସ—ଛନ୍ଦା—

ଛନ୍ଦା—ଶୁଣ ଚଟ୍ଟପଟ୍ଟି ସାହେବ, ଶୁଣ ମନୀଷା। ଏହି ହାରି—Mr Das—( କଥା ନ ସରୁଣୁ Mr Das ଛନ୍ଦାକୁ ଗୁଳି କରି ଦେଲେ )

ଚଟ୍—କ'ଣ କଲ ଦାସ ? (ଛନ୍ଦା ନିକଟକୁ ଦୌଡ଼ି ଯାଇ) ଛନ୍ଦା—ଛନ୍ଦା—

ମନୀଷା—ଓଃ—ତୁମେ, ତୁମେ—(ବେହୋସ ହୋଇ Mr Dasଙ୍କ ଉପରେ ପଡ଼ିଗଲେ )

ଚନ୍ଦ୍ର— ( ହଠାତ୍ ପିସ୍ତଲ ଛଡ଼ାଇ ନେଇ, ହାରଟିକୁ ଧରି ) ନା—
ନା—ମୁଁ ଖୁନ୍ କରିଛି—ମୁଁ ଖୁନୀ—ମୁଁ ଖୁନୀ,
ମନୀଷାର ହାର ଲଚି—ଗୁଲିଯାଅ ବନ୍ଧୁ, ମନୀଷାକୁ ନେଇ
—ପୁଲିସ୍‌କୁ ଖବର ଦିଅ—ଖୁନୀ ଧରାପଡ଼ିଛି—ଈର୍ଷାରେ
ପାଗଳ ହୋଇ ମୁଁ ଖୁନ୍ କରିଛି—ମୁଁ ପାଗଳ—
ମୁଁ ପାଗଳ—ହାଃ —ହାଃ —

— — —

## ଶେଷ ଦୃଶ୍ୟ

[ରଙ୍ଗ ମଞ୍ଚର ଯବନିକା— ସେହି ଅଭିନେତା କହୁଥିଲେ—
ଦର୍ଶକମାନେ ଶୁଣୁଥିଲେ ]

ଅଭିନେତା—ଏକ ହାତରେ ପିସ୍ତଲ—ଅନ୍ୟ ହାତରେ ମନୀଷାର
ହାର,ସବୁରି ଉପରେ ମୋର ସ୍ୱୀକାରୋକ୍ତି—ପ୍ରମାଣ ହେବାକୁ
ବାକି ରହିଲା ନାହିଁ ଯେ, ମୁଁ ନିଜେ ହତ୍ୟାକାରୀ—
ମୋର ଫାଶି ହୋଇଥାନ୍ତା; ମାତ୍ର ପ୍ରତ୍ୟକ୍ଷ ଦର୍ଶୀ କୌଣସି
ଜଣେ ହେଲେ ସାକ୍ଷୀ ନ ଥିବାରୁ, ଯୁରିଙ୍କ ସଙ୍ଗେ ଏକମତ
ହୋଇ ବିଚାରପତି ରାୟ ଦେଲେ ଯେ, ଅସାମୀ ମଦ ଓ
ଈର୍ଷାର ବଶବର୍ତ୍ତୀ ହୋଇ ଏହି ଖୁନ୍ କରିଛି—ସୁତରାଂ
୭ ବର୍ଷ କାରାଦଣ୍ଡର ଅଦେଶ ହେଲା । ୭ ବର୍ଷ
ନ ପୁରୁଣୁ ମୁଁ ମୁକ୍ତି ଲଭିଲି । ଶରୀର ମୋର ମୁକ୍ତି
ଲାଭ କଲା ସତ, ମାତ୍ର ମନ ମୋର ଅଦୌ ମୁକ୍ତିଲାଭ କରି
ନାହିଁ—ମୋର ବନ୍ଧୁ ମନୀଙ୍କୁ ଉପହାର ଦେଇଥିବା ସେହି
ପ୍ରୀତି-ହାର ପ୍ରତି ଅଦ୍ୟାପି ମୋର ବାସନା ପୂର୍ବପରି ଅତୃପ୍ତ

ରହୁଛୁ । ସେହି ଅତୃପ୍ତ ବାସନାର ଜଗନ୍ନ କବଳରୁ ଜୀବନ ନିଜକୁ ରକ୍ଷା କରିବ, କିପରି ମେକାଲୟର ସମର୍ଦ୍ଧ ସ୍ଥାନ କରି ଲଭ ରହିବ; ସେଥିପାଇଁ ଅଜୀବନ ଜଣେ ଅଭିନେତା ହୋଇ ରହିବାର ସଙ୍କଳ୍ପ ସେଦିନ ମୁଁ ଆହରଣ କଲି—ରଙ୍ଗ-ମଞ୍ଚର । ଆଜି ମୁଁ, ମାତାଲ ପ୍ରେମିକର ଅଭିନୟ କରିବ; ସେଥିପାଇଁ make up ( ମେକ୍‌ଅପ୍ ) ହେଉଛୁ—ହଠାତ୍ ନଜର ପଡ଼ିଗଲା, କାଲେଣ୍ଡର୍ ଉପରେ. ତଳେ ନାଲି ଦାଗ ଦିଅ ତା'ରିଖରୁ ବୁଝିବାକୁ ବାକୀ ରହିଲା ନାହିଁ, ଆଜି ମୋର ବନ୍ଧୁର ବିବାହ-ସ୍ମୃତି ଦିବସ । ମୁଁ ଉନ୍ମାଦ ହୋଇଗଲି । ମୋ ପକ୍ଷେ ଅଭିନୟ—ବିଶେଷତଃ ମାତାଲ ପ୍ରେମିକର ଅଭିନୟ, ଅସମ୍ଭବ ହୋଇ ଉଠିଲା । ମ୍ୟାନେଜର ବାବୁଙ୍କୁ କେବଳ ଅକ୍ଷମତାର କଥା ଜଣାଇ କ୍ଷମା ମାଗି ନେଇଥିଲି, ଆଶାକରେ ଆପଣମାନେ କ୍ଷମା କରିବେ ।

ମିଃ ଦାସ—[ ଦର୍ଶକ ମାନଙ୍କ ଭିତରୁ ହଠାତ୍ ଚିତ୍କାର କରି କରି ଉଠିଥିଲେ] କିନ୍ତୁ ମୁଁ କ୍ଷମା କରିପାରେ ନା, ଶିତେନ—ମୁଁ କ୍ଷମା କରିପାରେ ନା ( ଦର୍ଶକ ଗଣ ଅବାକ୍ ହେଲେ )

ଅଭିନେତା—( ଆଶ୍ଚର୍ଯ୍ୟ ହୋଇ ଗୁହିଁଲେ )

ମିଃ ଦାସ—( ରଙ୍ଗମଞ୍ଚକୁ ଉଠିଗଲେ )

ଅଭିନେତା—କିଏ—Mr Das ?

ମିଃ ଦାସ—Mr Das ମରିଯାଇଛି ରେ—ମୁଁ ତୋର ବାଲ୍ୟ-ବନ୍ଧୁ ରଞ୍ଜନ——

ଚିତ୍ରପଟ—( ନୀରବ )

ମିଃ ଦାସ—ବନ୍ଧୁ—ବନ୍ଧୁ—କ୍ଷମାକର ମୋତେ, ବନ୍ଧୁ—

ଶେଷ ଦୃଶ୍ୟ ]

ଚନ୍ଦ୍ରପତି—( କୁଣ୍ଠାର ) ବନ୍ଧୁ—ବନ୍ଧୁ ମୋର ! ମୋର ବନ୍ଧୁ-ପତ୍ନୀ ଅହିଥିବେ ନିଶ୍ଚୟ——

ମି: ଦାସ—ଆହିଥିଲେ—ତୋତେ ଦେଖି ତୋର ଅଭ୍ୟର୍ଥନାର ଆୟୋଜନ କରିବା ପାଇଁ ଘରକୁ ଲେଉଟି ଗଲେ—ଆଉ ତୋର କଥା ଶେଷ ହେଲେ, ତୋତେ ନେଇଯିବ, ସେଥିପାଇଁ ମୁଁ ରହିଲି । ମ୍ୟାନେଜର୍ ବାବୁ ! ଆଜ ତାଙ୍କ ସ୍ୱର୍ଣ୍ଣୋଦୟକ୍ଷଣ ! ଆଜ ଯେତେବେଳେ ଅଭିନୟ ଶେଷ—ସେତେବେଳେ, ଆପଣମାନେ ଗରିବ କୁଟୀରରେ ପଦାର୍ପଣ ଦେଇ ମୋର ଅଭିନେତା-ବନ୍ଧୁର ଅଭ୍ୟର୍ଥନା-ଉତ୍ସବକୁ ସାଫଲ୍ୟ ମଣ୍ଡିତ କରିବେ—ଏତିକି ମୋର ଅନୁରୋଧ ।

---

## ପଟ ପରିବର୍ତ୍ତନ

[ ମନୀଷାର ସେହି ପ୍ରଧାନ କକ୍ଷ—ସେହି ପଲଙ୍କ—ବିଛଣା—ଆସବାବ୍ ପତ୍ର ଇତ୍ୟାଦି ଅପରିବର୍ତ୍ତିତ ରହିଛି—ପ୍ରାଚୀର ଗାତ୍ରରେ ମନୀଷାର photo ଝୁଲୁଥିଲା—ସେହି ଫଟୋ ତଳେ ଲେଖାଥିଲା—Marraige is a legalised protection—

( ଗୀତା ବସି ପଢ଼ୁଥିଲା )

ଚନ୍ଦ୍ରପତି—ମନୀଷା ଦେବୀ ! କଥା କ'ଣ, କହନ୍ତୁ ତ—

ଗୀତା—( ମ୍ୟାଗାଜିନ୍ ଅପସାରଣ କଲେ )

ଚନ୍ଦ୍ରପତି—ଗୀତା ଦେବୀ ! ମନୀଷା ଦେବୀ କାହାନ୍ତି ?

ଗୀତା—ବ୍ୟସ୍ତ ହେବେ ନାହିଁ—ଆଗେ ଆସନରେ ବସନ୍ତୁ—

ଚଟ୍‌ପଟି—ଉହୁ - ଉହୁ—

ଗୀତା—ଝଡ଼ର ଲକ୍ଷଣ ଦେଖା ଯାଉଛି—ମୁଁ ଝରକା ବନ୍ଦ କରି ଦେଇ ଆସେଁ—

ଚଟ୍‌ପଟି—[ ବିସ୍ମୟଭରା ନୟନରେ ଗୃହଅଡ଼େ ଗୃହିଁ ରହିଲେ—ଗୀତା ଝରକା ବନ୍ଦ କରି ଦେଇ ଆସିଲେ ] ମୋ ମନ ଭିତରେ ବି ଗୋଟାଏ ଭୀଷଣ ଝଡ଼ର ଲକ୍ଷଣ ଦେଖିପାରୁଛି, ଗୀତା ଦେବୀ—

ଗୀତା—ଆଉ ଲୁଚେଇ ଲାଭ ନାହିଁ, ଶିବେନ୍ ବାବୁ—ମନୀଷା ଦେବୀ ଆଉ ନାହାନ୍ତି—

ଚଟ୍‌ପଟି—ମନୀଷା ଦେବୀ ନାହାନ୍ତି ?—ମନୀଷା ନାହିଁ ?—

[ ପ୍ରବଳ ଝଡ଼ ବହିବାକୁ ଲାଗିଲା ]

ଗୀତା—ଆତ୍ମାର ବିନାଶ ନାହିଁ—ଗୀତାର ସାର ବାଣୀ । ଏହାକୁ ସ୍ମରଣ କରି ଶୋକ ମୋଚନ କରନ୍ତୁ, ଶିବେନ୍ ବାବୁ—ଶୁଣନ୍ତୁ ଯେଉଁ ଦିନ ହୁଏ, ମନୀଷା ଦେବୀ ମୂର୍ଚ୍ଛା ଗଲେ, ଆପଣ ଦେଖି ଥିବେ; ସେହି ଦିନ୍ ସେ ଯେ ଶଯ୍ୟା ନେଲେ ଏହି ପଲଙ୍କରେ ( ଦେଖାଇ ), ଆଉ ଉଠିଲେ ନାହିଁ । ଆପଣଙ୍କର ବନ୍ଧୁପତ୍ନୀ ଶୋଇଥାନ୍ତି—ଆଉ ସେବା ଶୁଶ୍ରୂଷା କରୁଥାନ୍ତି, ଆପଣଙ୍କର ବନ୍ଧୁ—ଦିବା ରାତ୍ର ଭୁଲି—[ ଠିକ୍ ସେହି ଦୃଶ୍ୟ ଦେଖାଗଲା—ମନୀଷା ଓ ମିଃ ଦାସ କଥାବାର୍ତ୍ତା ହେଉଥାନ୍ତି ]

ମନୀଷା—ଉହୁ—ଉହୁ—ତୁମ ହେଲ କାହିଁକି ?

ମିଃ ଦାସ—ତୁମର କଷ୍ଟ ହେଉ ନାହିଁ ତ ମନୀଷା ?

ମନୀଷା—ନା ନା—ମୋର ବରଂ ଅନନ୍ଦ ହେଉଛି, ତୁମେ ମନକଥା ଫିଟାଇ କହୁଛ ବୋଲି—

ମିଃ ଦାସ—"ମନୀଷାର ହାର" ଏତିକି କହି ଆଉ କଣ କହିବାକୁ ଯାଉଥିଲା ଛନ୍ଦା, ଫୋନ୍‌ରେ ମୋର ବନ୍ଧୁଙ୍କ—ମୁଁ ଟିକ୍ ସେତିକିବେଳେ ପହଞ୍ଚି ତା ମୁହଁକୁ ପଛରୁ ଚପି ଧରିଲି ।

ମନୀଷା—ତା'ପର ?

ମିଃ ଦାସ—ସିନେମା ଅନୁଷ୍ଠାନରେ ଛନ୍ଦା ଯୋଗ ଦେବ—ଦମ୍ପତିର ମିଳନ ବାଟରେ ଛନ୍ଦା ଗୋଟିଏ ପ୍ରଧାନ ଅନ୍ତରାୟ ବୋଲି ବନ୍ଧୁ ମୋର ନିଜର ମାନ ସମ୍ଭ୍ରମ ବିସର୍ଜନ ଦେଇ, ଛନ୍ଦା ସହିତ ଅଭିନୟର ସାଥି—ଏପରିକି ଜୀବନର ସାଥି ପର୍ଯ୍ୟନ୍ତ ହେବାକୁ ପ୍ରସ୍ତୁତ ହୋଇଥିଲେ—

ମନୀଷା—ଅଉ ବନ୍ଧୁର ପ୍ରାଣ ଓ ବନ୍ଧୁପତ୍ନୀଙ୍କ ମାନ ରକ୍ଷିବା ପାଇଁ ଖୁନ୍ ନ କରି ବି ନିଜେ ହୋଇଥିଲେ ଖୁନୀ—

ମିଃ ଦାସ—ସେହି ବନ୍ଧୁ-ପତ୍ନୀଙ୍କ ସ୍ୱାମୀ ହୋଇ ମୁଁ କିପରି ଖୁନ କରିବାର ଅଭିସନ୍ଧି କରିଥିଲି, ତା'ତ ଅହୁରି ଶୁଣି ନାହିଁ ।

ମନୀଷା—କ'ଣ ? କ'ଣ ?

ମିଃ ଦାସ—ଛନ୍ଦା ସିନେମାକୁ ଯେପରି ନ ଯାଏ - ଚିରଦିନ ମୋର ବିଳାସର ସଙ୍ଗିନୀ ହୋଇ ରହେ, ସେଥିପାଇଁ ତାକୁ ଲୋଭ ଦେଖାଇ ଥିଲି ସମସ୍ତୁଲିଲ୍-ସ୍କେଚ—

ମନୀଷା—ଓଃ ! କି ଭୟଙ୍କର ! ନା, ନା, ତୁମେ ସୁନ୍ଦର, ତୁମେ ସୁନ୍ଦର—ତୁମେ ସତ କହୁଛ—ତୁମେ ମୋର ସତ୍ୟ, ଶିବ, ସୁନ୍ଦର—ହାତ ଦିଅ—ହାତ ରଖ ମୋ ହାତରେ—

ମିଃ ଦାସ—ଅଜ ନୁହେ ମନୀଷା ! ରକ୍ଷିବ ସେହିଦନ, ଯେଉଁଦନ ବନ୍ଧୁଙ୍କୁ ମୁକ୍ତ କର, ତାର ବନ୍ଧୁପତ୍ନୀଙ୍କ ପାଖକୁ ନେଇ ଆସିବ—ଅଜ ମୋର ପ୍ରକୃତ ବାରିଷ୍ଟର ଜୀବନର ପ୍ରତିଷ୍ଠା କରି ବନ୍ଧୁର ତ୍ୟାଗର ମହତ୍ତ୍ୱ ବଢ଼ାଇବ—[ମନୀଷା ବିସ୍ମୟିତ ନେତ୍ରରେ ଗୁହିଁ ରହିଲେ ]

ମିଃ ଦାସ—ମନୀଷା, ମନୀଷା !

ମନୀଷା—ଗୀତା, ଗୀତା—

[ ଗୀତା-ପୋଥି ଆଣି ମିଃ ଦାସ ଥୋଇଦେଲେ ମନୀଷାର ବକ୍ଷ ଉପରେ—ଚଣ୍ଡପତିର ସ୍ୱପ୍ନ ଭୁଟିଗଲା ]

ଚଣ୍ଡପତି—ତା'ପର ?

ଗୀତା—ମୁଁ ମଧ୍ୟ ସେହି ସମୟରେ ପହଞ୍ଚି ଯାଇଥିଲି । ତା' ପରେ ମତେ କହିଲେ—

ଚଣ୍ଡପତି—କଣ—କ'ଣ ?

ଗୀତା—"ଗୀତା ! ମୁଁ ଅଜ ସ୍ୱୀକାର କରୁଛି, "Marriage is a legalised protection.—ବିବାହ ଗୋଟିଏ ଆଇନ ସଙ୍ଗତ ସଂରକ୍ଷଣ" । ଚଣ୍ଡପତି ସାହେବଙ୍କ ସଙ୍ଗେ ଦେଖା ହେବ ନାହିଁ ହୁଏତ—କାରଣ ମୋର ସମୟ ଶେଷ ହୋଇ ଅସୁଛି; ଯଦି ଦେଖା ହୁଏ, କହିବୁ ତାଙ୍କୁ ମନୀଷାର ଇଚ୍ଛା—"

ଚଣ୍ଡପତି—କ'ଣ ?

ମିଃ ଦାସ—( ପ୍ରବେଶ କରି ) ଗୀତାକୁ ବିବାହ କରି ସଂସାରୀ ହେବେ—ଅଜ ଏହି ଉପହାରଟି ପିନ୍ଧାଇ ଦେବେ, ଗୀତାର କଣ୍ଠରେ—

ଚଟ୍ଟପଟି—ମନୀଷାର ହାର ?

ମିଃ ଦାସ—ଗୀତା ମଧ୍ୟରେ ମନୀଷାକୁ ପାଇବୁ, ବନ୍ଧୁ—ମନୀଷାର ଶେଷ କଥା—

ଚଟ୍ଟପଟି—କାଣ୍ଡସ୍ଥ ରକ୍ଷିବ—ଯେତେବେଳେ ମନୀଷାର ଇଚ୍ଛା—
[ ହାରଟା ଗୀତାର କଣ୍ଠରେ ପିନ୍ଧାଇ ଦେଲେ—ଗୀତା ପ୍ରଣାମ କଲା ଚଟ୍ଟପଟିଙ୍କୁ—ଅଜ ମିଃ ଦାସ ସାଶ୍ରୁ ନୟନରେ ଚୁମ୍ବି ଦେଲେ ମନୀଷାର ଫଟୋକୁ ]

———



କଟକ, ଶ୍ରୀ ହରନାଥ ପ୍ରେସରେ ଶ୍ରୀ ଅଜୟକୁମାର ଘୋଷଙ୍କ ଦ୍ୱାରା ମୁଦ୍ରିତ

# ଅଶ୍ୱିନୀ ବାବୁଙ୍କର ପ୍ରକାଶିତ ନାଟକାବଳୀ

| | | |
|---|---|---|
| ରକ୍ତ ଭୁଜଙ୍ଗ | ( ଐତିହାସିକ ) | ଟ ୧ ୳ |
| ଉତ୍କଳ ଗୌରବ | ,, | ଟ ୧ ୳ |
| ସେର୍ଫଜ | ,, | ଟ ୧ । |
| କଳାପାହାଡ଼ | ,, | ଟ ୧ ୴ |
| ଗୋବିନ୍ଦ ବିଦ୍ୟାଧର | ,, | ଟ ୧ । |
| ସମଲେଶ୍ୱରୀ | ,, | ଟ ୧ । |
| କୋଣାର୍କ | ,, | ଟ ୧ । |
| ଓଡ଼ିଅ ଝିଅ | ,, | ଟ ୧ । |
| କେଶରୀ-ଗଙ୍ଗ | ,, | ଟ ୧ ୴ |
| କପିଳେନ୍ଦ୍ର ଦେବ | ,, | ଟ ୨ < |
| ତାଜମହଲ | ,, | ଟ ୨ < |
| ପାଇକ ପୁଅ | ,, | ଟ ୧ । |
| ଭୀଷ୍ମ | ( ପୌରାଣିକ ) | ଟ ୧ । |
| ସାଲବେଗ | ,, | ଟ ୧ । |
| ଭକ୍ତ ହରିଜନ | ,, | ଟ ୧ । |
| ସାବିତ୍ରୀ | ,, | ଟ ୧ ୴ |
| ବ୍ରଜମାହାତ୍ମ୍ୟ | ,, | ଟ ୧ ୳ |
| ଶ୍ରୀ ଲୋକନାଥ | ,, | ଟ ୧ ୳ |
| ଚଣ୍ଡାଳୁଣୀ | ,, | ଟ ୧ ୳ |
| ବଧୂଅରକ୍ଷିତ | ,, | ଟ ୧ । |
| ଶ୍ରୀ ମନ୍ଦିର | ,, | ଟ ୧ ୳ |
| ଜାନକୀ | ,, | ଟ ୧ ୳ |

| | | |
|---|---|---|
| ଜନନୀ | ( ସାମାଜିକ ) | ଟ ୧। |
| ଭୁଲ | ” | ଟ ୧। |
| ସ୍ୱପ୍ନରମଣୀ | ” | ଟ ୧୷ |
| ମାଷ୍ଟରବାବୁ | ” | ଟ ୧। |
| ଉଷାଙ୍କିତ | ” | ଟ ୧୶ |
| ଅଭିନୟ | ” | ଟ ୧୷ |
| ଅସତୀ | ( ଉପନ୍ୟାସ ) | ଟ ୨୲ |

## ପ୍ରକାଶ ପ୍ରତୀକ୍ଷାରେ

| | |
|---|---|
| ଭୁବନେଶ୍ୱର | ( ପ୍ରାକ୍ ଐତିହାସିକ ) |
| ଦମୟନ୍ତୀ | ( ପୌରାଣିକ ) |
| ବ୍ରାହ୍ମଣକନ୍ୟା (ଲକ୍ଷ୍ମୀ-ଗୋପୀନାଥ) | ( ପୌରାଣିକ ) |
| ମାମଲତକାର | ( ସାମାଜିକ ) |
| ଦୁଃଖେ-ସୁଖେ | ” |
| ମୃତ୍ୟୁ | ” |



